ସାରାଜୀବନ ସୁଖୀ ହେବାର ଅଭିନୟ କରି ଥକି ଯାଇଥିବା ଲୋକଟି ଏବେ ଦୁଃଖରେ ଭାଙ୍ଗି ପଡୁଛି କାହିଁକି ? କାହିଁକି ସେ ଶ୍ୱେତପଦ୍ମାଙ୍କୁ ମୁହଁ ଦେଖାଇବାର କ୍ଷମତା ହରେଇ ଦେଉଛନ୍ତି ? ନା - ଏବେ ନିଜେ ସେ ଏଇ ଡାକ୍ତରଙ୍କୁ ନେଇଯିବେ, କହିବେ, 'ଶ୍ୱେତା, ପ୍ରମାଣ ଚାହୁଁଚତ ନିଜେ ସାକ୍ଷୀ ପ୍ରମାଣ ସାଙ୍ଗରେ ନେଇ ଆସିଛି । ମୋତେ ଆଦୌ କ୍ଷମା କରିବ ନାହିଁ । ମୁଁ ନୃଶଂସ, ପାପୀ, ତୁମ କନ୍ୟାର ହତ୍ୟାକାରୀ ।

ନରେନ୍ଦ୍ରଙ୍କର ଦାୟିତ୍ୱ ଥିଲା, ସେହି ଶିଶୁ କନ୍ୟାମାନଙ୍କୁ ବାହାରର ଆଲୋକ ଦେଖାଇବା ଏବଂ ନିବେଦିତା ଜାଣିଥିଲା କେତେ ସହଜରେ ସେମାନଙ୍କୁ ଶେଷ କରିହେବ ।

ମଂଜୁକୁ ମୁଁ ଚିହ୍ନିନଥିଲି । ଆଦୌ କେବେ ଦେଖି ନ ଥିଲି । ନର୍ସିଂହୋମରେ ଯାହା ଯାହା ଘଟିଥିଲା ସେ ସବୁକଥା କହିଲା । ପଚାରିଲା, 'ଏଭଳି ଶାଶୂ ସ୍ୱାମୀଙ୍କ ପାଖରେ ସମୟ କାଟିବ ? ତୁମ ଜୀବନକୁ ବି ଭୟ ଅଛି ... ।'

ଏ ସମାଜର ଏକ ଅମୀମାଂସିତ ସମସ୍ୟାର ଉପସ୍ଥାପନା କରିଛନ୍ତି ଲେଖିକା ।

ମଞ୍ଜୁଳାର ଝିଅ
ଶକୁନ୍ତଳା ପଣ୍ଡା

ପ୍ରକାଶକ :
ସୁଚରିତା ପବ୍ଲିକେଶନ୍ସ
୪୩୧, ସହିଦ ନଗର, ଭୁବନେଶ୍ୱର-୭

ପ୍ରଥମ ପ୍ରକାଶନ :
୨୦୦୪

ମୁଦ୍ରଣ :
ଜଗନ୍ନାଥ ପ୍ରୋସେସ୍ ପ୍ରା.ଲି., କଟକ
ମୂଲ୍ୟ :
ଅଶୀ ଟଙ୍କା ମାତ୍ର

**MANJULARA JHIA**
**Sakuntala Panda**

Published by

**SUCHARITA PUBLICATIONS,**
Bhubaneswar-751007

First Edition 2004

Printed at

Jagannath Process Pvt. Ltd., Cuttack

**Price :**

Rupees Eighty only

ମୋ ଲେଖା ପଢ଼ିବାକୁ ଭଲ ପାଉଥିବା
ପାଠକପାଠିକାମାନଙ୍କୁ......

-ଲେଖିକା

ଲୁଗାକାନିରେ ମୁହଁଟା ପୋଛିନେଇ ଧୀରେ ସିଢ଼ିରେ ପାଦ ରଖିଲା ଶ୍ୱେତପଦ୍ମା । ବିଳମ୍ବିତ ରାତ୍ରି । ପ୍ରଭାତଙ୍କୁ ଅପେକ୍ଷା କରିବାର ସମୟସୀମା ଶେଷ ହୋଇଯିବା ଭଳି ସେ ତରତରରେ ଚାଲି ଆସୁଛି ତଳ ମହଲାର ଖାଇବା ଟେବୁଲ୍ ପାଖରୁ । ପାଖ ଘରୁ ଶୁଣାଯାଉଛି ସେଇ ଚିରାଚରିତ ସ୍ୱର, ଗ୍ରାମ୍‌ଫୋନ୍‌ରେ ବାଜୁଥିବା କେଉଁ ଫଟା ରେକର୍ଡର ଶବ୍ଦ ଭଳି । ବାରମ୍ବାର ସେଇ କେତେ ପଦ କଥା । ସତେକି ସେଇଠି ପିନ୍ ଲାଗିଯାଇଛି ।

ଫୋନ୍‌ଟା ଅନେକ ବେଳୁ ବାଜୁଛି । ଡେଙ୍ଗି ଭୁକି ଭୁକି ଅସ୍ଥିର ହେଲାଣି । ତା'କୁ କେହି  ଜଣେ ବାହାରକୁ, ରାସ୍ତାରେ ବୁଲେଇବାକୁ ନେଇ ନାହିଁ ଯେ । ଏ ଘରେ କାମ କରିବା ଲୋକଙ୍କର ଅଭାବ ନାହିଁ । ତେବେ ପର କ'ଣ ଆପଣାର ହେବେ ? ଯେତେ ଦେଲେ ବି ଅ ପଛକେ ।

ପ୍ରଭୁ, ପ୍ରଭାତର ରାତି ଖାଇବା ବରଫ ଭଳି ଥଣ୍ଡା ହୋଇଯିବଣି । କିଏ ତା'କୁ ଗରମ କରି ଖାଇବାକୁ ଦେବ ? କ୍ୱଚିତ୍ କେବେ କ୍ଲବ୍ ବା ହୋଟେଲ୍‌ରେ ଖାଇ ଆସିଥିବ ପ୍ରଭାତ । ରାତି ଅଧରେ ଫେରିଲେ ବି ଘର ଖାଇବା ଖୋଜିବ । ପିଲାଦିନୁ ଥଣ୍ଡା ଖାଇପାରେ ନାହିଁ । ଏ କଥା ମା' ବୁଝେ । ମା' ମନ ମାନେ ନାହିଁ । କିନ୍ତୁ ଅନ୍ୟ କେହି ଏସବୁ ଭାବି ପାରନ୍ତି ନାହିଁ ।

ଗାୟତ୍ରୀଙ୍କର ଏମିତି କଥା କହିବା ଚାଲିଥାଏ ଅନେକ ସମୟ ପର୍ଯ୍ୟନ୍ତ । ହାତଗୋଡ ଅଚଳ ହେଲେ ବି କଥା କହିବାରେ ଅସୁବିଧା ନାହିଁ । ମୁଣ୍ଡ ଠିକ୍ ଅଛି । ବୟସ ନବେ ଛୁଇଁଲାଣି । ତଥାପି ଘରର ଯାବତୀୟ ବିଶୃଙ୍ଖଳା ସେ ଦେଖି ପାରନ୍ତି । ବୋହୂ ଶ୍ୱେତପଦ୍ମାର ଏଇ ବେପରୱା, ଖାପଛଡା ସ୍ୱଭାବ ତାଙ୍କ ଦେହ ସହେ ନାହିଁ । ଧୀର, ଶାନ୍ତ,  ଏକାନ୍ତ ବାଧ୍ୟ, ସୌନ୍ଦର୍ଯ୍ୟର ଐଶ୍ୱର୍ଯ୍ୟରେ ମଣ୍ଡିତ ବୋହୂଟା ଏଇ କେତେ

ବର୍ଷ ହେବ ଯେପରି ଅନ୍ୟ କେହି ଜଣେ ହୋଇ ଯାଇଛି । ତଳ ଘରେ ରୋଗଣୀ ଶାଶୂର ଆଖିରେ ନିଦ ନାହିଁ । ସେ ପାଖକୁ ଦୃଷ୍ଟି ନାହିଁ ତା'ର ।

ଯାହା ଠାକୁରଙ୍କ ବରାଦ । ଗାୟତ୍ରୀଙ୍କର ନିତିଦିନିଆ କଥା ଏସବୁ । କାନ ପାଖରୁ ଏସବୁ ଆଡେଇ ଦେଇ ଶୋଇବା ଘର କବାଟଟା ଭିତରୁ ଆଉଜେଇ ଆଣିଲା ଶ୍ୱେତପଦ୍ମା । ତେବେ ତାକୁ ଦେଖିଲେ ମନେହୁଏ, ଗାୟତ୍ରୀଙ୍କର ଏତେସବୁ ଆଳାପ ସେ କିଛି ଶୁଣିପାରୁ ନ ଥିଲା କିମ୍ବା ସେଦିନ ଇଚ୍ଛା କରି ସେ ଶାଶୂଙ୍କୁ ଉପେକ୍ଷା କରୁ ନ ଥିଲା । ସେତେବେଳେ ତା'ର ନିଜସ୍ୱ ପୃଥିବୀରେ ହଜିଯାଇଥିଲା ସେ । କେଉଁ ଏକ ଦୁର୍ଲଭ ପଦାର୍ଥ ପ୍ରାପ୍ତିର ଆନନ୍ଦରେ ସେ ବିଭୋର ହୋଇ ଉଠିଥିଲା । ହୁଏତ କିଛି ସ୍ୱର୍ଗସୁଖ ତା'ର ଅନ୍ତରଆତ୍ମାକୁ ଆଚ୍ଛନ୍ନ କରିଥିଲା ।

ଶୋଇବା ଘରେ ନରମ ବିଛଣାରେ ଲୋଟିଯାଇ ସେ ଯେପରି ନିଶ୍ଚିନ୍ତ ହୋଇଯାଇଥିଲା । ହୁଏତ ବିତିଯାଇଥିବା ଦିନ, ହଜିଯାଇଥିବା ସ୍ୱପ୍ନ ସବୁକୁ କିଏ ଯେପରି ସଜେଇ ଦେଇ ତା' ପାଖକୁ ପଠେଇ ଦେଇଥିଲା ।

ଏମିତି ଦିନେ ନିଶ୍ଚୟ ହେବ, ଏହି ସୁନ୍ଦର ସମୟଟି ତା' ହାତ ପାଖରେ ପହଞ୍ଚିଯିବ ।

ସେ ଭବିଷ୍ୟତଦ୍ରଷ୍ଟା ନୁହେଁ । କିନ୍ତୁ ବାସ୍ତବ ସ୍ୱପ୍ନକୁ ସେ କୁରୂପ ଦେଇ କେବେ ଗଢ଼ିପାରେ ନାହିଁ ।

ଯା'କୁ ତ ଦିବାସ୍ୱପ୍ନ କୁହାଯାଇ ପାରିବ ନାହିଁ । ଏସବୁ ଥିଲା ତା'ର ଭବିଷ୍ୟତର ପରିକଳ୍ପନା । ସେ ଚାହିଁଥିଲା ସେଇ ଭବିଷ୍ୟତ ସେ ଗଢ଼ିବ । ସେ ପାରିବ । ଏ ବିଶ୍ୱାସ ତା'ର ଥିଲା । ତେବେ ଯେକୌଣସି ମହତ୍ କାର୍ଯ୍ୟର ଅନ୍ତରାଳରେ ମହାନ୍ କର୍ତ୍ତାଙ୍କର ସଦିଚ୍ଛା ନିହିତ ରହିଛି । ତାଙ୍କରି ଇଚ୍ଛା ହିଁ ସାଧିତ ହେଉଛି ।

ନିରୀହ ମଣିଷଟି ଯଦି ନିଜର ମନୋବଳ ହଜେଇ ବସେ ତେବେ ତା' ଶରୀର ଅଥର୍ବ ହୋଇଯିବ ଯେ ! ଜୀବନର ସମସ୍ତ ଆଶା ଭରସା ତୁଟିଯାଇ ଏକ ଅର୍ଥହୀନ ଜୀବନ ବଂଚିବା ବ୍ୟତୀତ ସେ କିଛି କରି ପାରିବ ନାହିଁ । ଭାଙ୍ଗି ପଡିଥିଲେ କ'ଣ ବା କରିପାରିଥାନ୍ତା ଶ୍ୱେତପଦ୍ମା ?

ନା, ସେହି ଦୃଢ଼ତା, ସୁସ୍ଥ ମାନସିକତା ନେଇ ନିଜକୁ ସୁନ୍ଦର ଭାବରେ ବଂଚାଇ ରଖିଛି ଶ୍ୱେତପଦ୍ମା ।

ଯେଉଁମାନେ ସେହି କୋମଳ କଳିଟିକୁ ମୋଡ଼ାଏ ଅଳିଆ କାଗଜ ଭାବି ମୋଡାମୋଡି କରି ଫୋପାଡି ଦେଇଥିଲେ, ସେ ସେମାନଙ୍କୁ କ୍ଷମା କରି ଦେଇଛି । ତା'ର ଆତ୍ମାରୁ କିଏ ଚିତ୍କାର କରିଛି, 'ହେ ପ୍ରଭୁ, ଏମାନେ ମୂଢ଼, ଅଧମ; ଏମାନେ ନିଜେ ବୁଝି ପାରୁ ନାହାଁନ୍ତି କିଭଳି ଭୟଙ୍କର ନିଷ୍ଠୁର କାର୍ଯ୍ୟ କରିବାକୁ ଆଗେଇ ଯାଉଥିଲେ । ହେ ମହିମାମୟ, ଏମାନଙ୍କୁ କ୍ଷମା କର ।'

ସେଦିନ ଠାକୁର ଘରେ ବସି ଏହି ପ୍ରାର୍ଥନା କରିଥିଲା ଶ୍ୱେତପଦ୍ମା । ଏବେ ତା'ର ସମସ୍ତ ଚିନ୍ତା ଶେଷ ହୋଇଯାଇଛି । ଏହି ସୁନ୍ଦର ଦିନକୁ ସେ ଚାହିଁ ରହିଥିଲା । ସେଇ ଅପେକ୍ଷାରେ, ସେହି ଆଶା ତା'କୁ ବଂଚାଇ ରଖିଛି ।

କେବେ ? କେଉଁ ଦିନ ?

କିପରି ଭାବରେ ସବୁ କଥା ହେବ ? ସେହି ରାସ୍ତାକୁ ଦୀର୍ଘ କେତେଦିନ ହେବ ଖୋଜି ହେଉଛି ଶ୍ୱେତପଦ୍ମା । ଏମିତି ଅଚାନକ ସମୟ ତା'କୁ ଛୁଇଁ ଦେଇ ଚମକେଇ ଦେବ ତା' ସେ ଭାବି ପାରି ନ ଥିଲା ।

ଶୋଇବା ଘରୁ ଉଠି ଆସିଛି ଶ୍ୱେତପଦ୍ମା । ବାହାରେ ଉପଭୋଗ୍ୟ ଜହ୍ନରାତି । ଏ ରାତି ଏତେ ସୁନ୍ଦର ହୋଇପାରେ ! ଆକାଶରୁ ଝରିଯାଉଛି ତାରାଫୁଲର ମାଳ । ଉଜ୍ଜ୍ୱଳ ଜ୍ୟୋସ୍ନା ତା'କୁ ସଜେଇ ଦେଇଛି ଅଭିସାରିକା ରୂପରେ । ଆକାଶକୁ ଧୋଇ ପରିଷ୍କାର କରି କିଏ ଅବା ଜାଳି ଦେଇଯାଇଛି ଜହ୍ନର ବତୀ । ଦ୍ୱିତଳର ଏହି ଖୋଲା ଛାତର ଦୋଳିଟି ତା'ର ଚିର ପ୍ରିୟ । ସାରା ରାତି ଏଇଠି ଆଉଜି ବସି ଆକାଶକୁ ଚାହିଁ ଦେଖିବାର ଆନନ୍ଦ ଯେ ତା' ପାଇଁ ଅତୁଳନୀୟ ! ପଚାଶ, ବାଉନ ବର୍ଷର ଦେହଟା ଅସୁସ୍ଥ ହେବାର ସଂଭାବନା ଯେ ନାହିଁ, ତା' ନୁହେଁ । ଏଥିପାଇଁ ଏତେ ବେଶୀ ବ୍ୟସ୍ତ ହେବାରେ କ'ଣ ଅଛି ? ଥଣ୍ଡା ଟିକେ ଧରିବତ ? ଜର ବି ହୋଇପାରେ । ଏଥିନେଇ ଏ ମୁହୂର୍ତ୍ତକୁ ନଷ୍ଟକରି ଦେବ ସେ କାହିଁକି ?

'ଆରେ, ତୁମେ ଏଠି ? ସରି, ଶ୍ୱେତା । ଆଜି କ୍ଲବ୍‌ରେ ଖେଳରୁ ଉଠି ହେଲାନାହିଁ । ଖେଳ ଶେଷ ହେବାପରେ ସେମାନେ ମୋତେ ବାଧକଲେ ରହିବାକୁ । ସୁଜିତ୍‌ର ଜନ୍ମଦିନ ଥିଲା ତ । ଏଇତ ଖାଇସାରି ଆସୁଛି । ବାଧତଃ ଖାଇଲି ସେଠି । ଘରକୁ ଫୋନ୍‌କଲି, କେହି ଫୋନ୍ ଉଠାଇଲ ନାହିଁ ...... ।

କିଛି କହୁନ ଯେ ? ରାଗିଚ ମୋ ଉପରେ ? ଏମିତି ଏକ ତରଫା ଆଳାପ ଚାଲିଥିବ ? କିଓ, କଥା କ'ଣ ? ଆଜି କ'ଣ ନିଦ ନାହିଁ ?'

ପ୍ରଗଲ୍ଭ ପ୍ରଭାତଙ୍କର ଏତେସବୁ କଥା ଶୁଣିବା ପରେ ସାମାନ୍ୟ ହସିଲା ଶ୍ୱେତପଦ୍ମା । ଧୀରେ କହିଲା, 'ଜାଣିନାହିଁ, କାହିଁକି ଶୋଇପାରିଲି ନାହିଁ ।'

ପ୍ରଭାତ ବୋଧହୁଏ ଶୁଣି ପାରିଲେନି । ଶ୍ୱେତପଦ୍ମା ପାଖରେ ବସିଯିବା ସମୟରେ କହିଲେ, 'ଏ ପର୍ଯ୍ୟନ୍ତ ତୁମକୁ କହିପାରି ନାହିଁ, ଶ୍ୱେତା । ବାସ୍ତବିକ ସେ ରତ୍ନଟିଏ ।'

'କିଏ ? କାହା କଥା କହୁଚ ?' ଆସ୍ତେ ପଚାରିଲା ଶ୍ୱେତପଦ୍ମା ।

'ଆଜି କ୍ଲବ୍‌ରେ ସବୁ ଆଲୋଚନା ଆମ ଲୋପାକୁ ନେଇ ।'

'ଆମ ଲୋପା ! ସେ ତ ମଂଜୁଳାର ଝିଅ ।'

'ହଁ, ମଂଜୁଳାର ଝିଅ-' ଏତିକି କହି କ୍ଲାନ୍ତ ଭାବରେ ବସି ରହିଲେ ପ୍ରଭାତ ।

'ଖୁବ୍ ଶୀଘ୍ର ତାକୁ ଦେଖିବାକୁ ଇଚ୍ଛା । କାଲି ଏୟାରପୋର୍ଟ୍ ଯିବା । ଅଥଚ ସମୟ ଲମ୍ବିଯାଉଛି ।'

ଠିକ୍ ସେଇ ସମୟରେ ଶ୍ୱେତପଦ୍ମା ମନେ ହେଉଥାଏ ଜଣେ ଅନାସକ୍ତ, ଅବିଚଳିତ, ସଂସାରତ୍ୟାଗୀ ସନ୍ୟାସିନୀ । ଶ୍ୱେତପଦ୍ମାର ଶାନ୍ତ, ନିରବ ଚାହାଣି, ଅନାଗ୍ରହଭାବ, ନିଃଶବ୍ଦ ଆଳାପ କିଛି ବୁଝୁନଥିଲେ ପ୍ରଭାତ । ତଥାପି ନିଜର ଅସୀମ ଆଗ୍ରହରେ ସେ କହିବାକୁ ଆରମ୍ଭ କରିଥିଲେ,

'ତୁମେ ଜାଣିଛ କି ନାହିଁ, ଶ୍ୱେତା, ଲୋପା 'ନାସା' ଯିବା ପାଇଁ ସିଲେକ୍ଟ ହୋଇଯାଇଛି । ଝିଅଟି ଆନ୍ତର୍ଜାତୀୟ ସ୍ତରରେ ଖୁବ୍ ଶୀଘ୍ର ନିଜକୁ ପ୍ରତିଷ୍ଠିତ କରିବାକୁ ଯାଉଛି । ତୁମେ ଆଜି ଟି.ଭି ଦେଖିଲ କି ନାହିଁ ?'

'ହଁ, ଦେଖିଛି ।' ଶ୍ୱେତପଦ୍ମା ଆସ୍ତେ କହିଲା ।

'ତୁମ ପାଇଁ ସବୁ ନିଉଜ୍‌ପେପର୍ ମୁଁ ନେଇ ଆସିଛି । କ୍ଲବ୍‌ର ବୋର୍ଡରେ ନିଉଜ୍‌ପେପର୍, ପତ୍ରପତ୍ରିକାମାନଙ୍କରେ ପ୍ରକାଶ ପାଇଥିବା ଲୋପାମୁଦ୍ରା ଶର୍ମାଙ୍କର ହସହସ ଉଜ୍ୱଳ ମୁହଁର ସୁନ୍ଦର ଫଟୋ କେତୋଟିର ପେପର କଟିଂ ସବୁ ଦେଖି ମନରେ ଖୁବ୍ ଗର୍ବ ଆସିଲା, ଆମ ଓଡିଆ ଝିଅଟିଏ ତ ।

ଜାଣିଛ ଶ୍ୱେତା, ଖୁବ୍ ମନେପଡିଲା ଆମର ସେ ଝିଅଟି କଥା । ବଞ୍ଚିଥିଲେ

ଲୋପା ବୟସର ହୋଇଥାଆନ୍ତା । ଆମେ ବି ତାକୁ ଗଢ଼ି ପାରିଥାଆନ୍ତେ ନିଜ ଇଚ୍ଛା ମୁତାବକ, ତୁମର ଏସବୁ ମନକୁ ଆସେନା ?'

ଦୁହେଁ ଦୁହିଁଙ୍କୁ ଅସହାୟ ଦୃଷ୍ଟିରେ ଚାହିଁ ରହିଥିଲେ । ପ୍ରଭାତଙ୍କୁ ଅନୁଚ୍ଚ ସ୍ୱରରେ କହୁଥିଲା ଶ୍ୱେତପଦ୍ମା, 'ସେ କୋଭ ଆଉ ଜନ୍ମର କଥା, କାହିଁକି ବା ତା'ର ଅବତାରଣା କରୁଛ ଏବେ ?'

ସ୍ୱୀକାରୋକ୍ତି କରିବାଭଳି ପ୍ରଭାତ ପଛଦିନର କିଛି କଥା କହିଚାଲିଥିଲେ ।

ଶ୍ୱେତପଦ୍ମାର ମୁହଁ କଠିନ ହୋଇଉଠିଲା । ପ୍ରଭାତଙ୍କର ହାତ ଛଡେଇ ସେ ବୋଲିରୁ ଉଠିପଡିଲା ।

'କେତେ ରାତି ହେଲାଣି ଜାଣିପାରୁନ ? ମୋତେ ଖୁବ୍ ନିଦ ।'

ନିଦ କାହିଁ ? ପ୍ରଭାତଙ୍କୁ ଲୁଚେଇ ଆଖି ପୋଛିଲା ଶ୍ୱେତପଦ୍ମା । କ'ଣ ଭାବୁଛନ୍ତି ପ୍ରଭାତ ? ନିଜ ମା'ର କଥାରେ ଉଠ୍ ବସ୍ ହେଉଥିବା ଏହି ମୂଢ଼ ମଣିଷଟି ଏବେ ଅନେକ ବର୍ଷ ପରେ ଖୋଜୁଛନ୍ତି ତାଙ୍କର ସେଇ ଜନ୍ମିତ ମୃତ ଶିଶୁଟିକୁ । ଯିଏକି ସଂପୂର୍ଣ୍ଣ ଅନାବଶ୍ୟକ ଥିଲା ସେମାନଙ୍କ ପାଇଁ ! ପଶ୍ଚାତାପ ? ଦୀର୍ଘ ବର୍ଷ ପରେ ?

ବିଛଣାର ଅନ୍ୟ ପାଖକୁ ମୁହଁ ବୁଲେଇ ନେଇ ଶୋଇବାକୁ ଚେଷ୍ଟାକଲା ଶ୍ୱେତପଦ୍ମା ।

ଅରୁଣର ଜନ୍ମ ସମୟରେ କେତେ ଖୁସି ଏ ଘରେ ! ପୁଅ ଜନ୍ମର ଉତ୍ସବ ଲାଗି ରହିଥାଏ । ସାରା ପରିବାର ଖୁସିରେ ଉଛୁଳି ଉଠୁଥିଲେ । ଶ୍ୱଶୁର ଏ ଖୁସି ଦେଖି ପାରିଲେ ନାହିଁ, ତା' ମନେପକେଇ ଶାଶୂ କେବେ କିପରି ଦୁଃଖ କରି କହନ୍ତି ।

ପୁଅର ପ୍ରତିଟି ଦିନର ନୂଆ କଥାମାନ ଆମୋଦ ଦେଉଥିଲା ଘରର ପ୍ରତିଟି ସଦସ୍ୟଙ୍କୁ । ଅରୁଣ ଠୁକୁ ଠୁକୁ ଚାଲିଲା । ମା', ବାପା ଡାକିଲା । ଯେବେ ଭଲ ଭାବରେ କଥା କହି ଶିଖିଲା, ଚାରିବର୍ଷର ପୁଅ ଦିନେ ଜିଦ୍ କଲା,

'ମୋତେ କୁନି ଭଉଣୀ ଆଣିଦିଅ ।' କିଏ ଶିଖେଇ ଦେବାଭଳି କଥା

କହୁଛି ପିଲାଟା । ପ୍ରଭାତ ଶ୍ୱେତପଦ୍ମାର ମୁହଁକୁ ଚାହିଁ ରହନ୍ତି ନିରବରେ । ଶ୍ୱେତପଦ୍ମାର ମନୋଭାବରେ କିଛି ପରିବର୍ତ୍ତନ ହୁଏ ନାହିଁ । ଶାଶୂ କହନ୍ତି,

'ଆରେ ବାୟା, ତୋର କୁନି ଭାଇ ଦରକାର କହ । ମୁଁ ପରା ତୋର ଗେହ୍ଲା ଭଉଣୀ । ଆ, ମୋ ସାଙ୍ଗରେ ଖେଳିବୁ ।'

'ନା', ଜିଦ୍ କରି ତଳେ ଗଡିଯାଏ ଅରୁଣ ।

'ପିଲାଟା ସମସ୍ତଙ୍କ ସ୍ନେହ ପାଇ ବେଶୀ ଜିଦିଆ ହେଇଯାଉଛି ।' ପ୍ରଭାତ ଗମ୍ଭୀର ହୋଇ କଥା କହୁଛନ୍ତି ।

ଶ୍ୱେତପଦ୍ମା କୋଳେଇ ନିଏ ଅରୁଣକୁ । କହେ,

'ଯାଃ, ଆମର କୁନି ଭଉଣୀ କ'ଣ ହେବ ? ଆମର ଅରୁଣ ବାବାଟା ସଙ୍ଗେ ମା' ଖେଳିବ । ବାପା ଖେଳିବେ ।'

ଅରୁଣ ସମସ୍ତଙ୍କୁ ଠେଲି ଦେଇ ଶ୍ୱେତପଦ୍ମା କୋଳରୁ ଉଠିଯାଇ ଦୌଡି ପଳାଏ ।

ପ୍ରଭାତ ନିରୁତ୍ତର ହୋଇ ବସି ରହନ୍ତି । ଶ୍ୱେତପଦ୍ମା ଉଠିଯାଇ ପୁଅକୁ କାଖେଇ ନେଇ ଗେହ୍ଲା କରି କହେ,

'ଦେଖ୍ ଅରୁ, ତୁ କାନ୍ଦିବୁ ଯଦି ଲୋପା ଆସିବ ନାହିଁ ।'

ଚାରିବର୍ଷର ଶିଶୁ ଅରୁଣ ସବୁ ଭୁଲିଯାଇ ପଚାରେ,

'ମା', ଲୋପା କେତେବେଳେ ଆସିବ ? କାହିଁକି ଆସୁନାହିଁ ?'

ଲୋପାକୁ ନେଇ ଅନେକ ପ୍ରଶ୍ନ ଲମ୍ବିଯାଏ ତା'ର । ଉତ୍ତର ଦେଇ ଥକିଯାଏ ଶ୍ୱେତା । ଆୟା ଇନ୍ଦୁ ବୁଝେଇ ବସେ ।

'ଦେଖ, ତୁମେ ଆଉ କାନ୍ଦିବ ନାହିଁ । ଜିଦ୍ କରିବ ନାହିଁ । ଚାଲ ତ, ଗାଧୋଇବା, ଜଳଖିଆ ଖାଇବା, କ୍ଷୀର ପିଇବା, କେତେ କାମ ବାକି ଅଛି ଯେ ତୁମର । ସବୁ କାମ ସରିଲେ ମଂକୁ ଆଣ୍ଟିଙ୍କୁ ଫୋନ୍ କରିଦେବା, ସେ ଯଦି ଅଫିସ୍ ଆସିବେ, ଲୋପା ବେବିକୁ ସାଙ୍ଗରେ ଆଣିବେ ତାଙ୍କ ଗାଡିରେ ବସେଇ ।'

ଅନ୍ୟ ଦିନେ-

ଶ୍ୱେତପଦ୍ମା ପୁଅର ଆଗ୍ରହ ଦେଖି କାହାଣୀ ଭଳି କହିବାକୁ ଆରମ୍ଭକରେ,

'ଆଜି ଲୋପା ଆସିବ । ମଂଜୁ ମାଉସୀ ଆସିବେ । ଲୋପା ସଙ୍ଗେ ତୁ ଖେଳିବୁ ନା ?'

ଅରୁଣ ଖୁସୀ ହୁଏ । ରାସ୍ତାରେ ଗାଡିର ଶବ୍ଦ ଶୁଣି ସକାଳୁ ଦଶଥର ବାହାର ଫାଟକ ପାଖକୁ ଦୌଡି ପଳାଏ ମଂଜୁ ମାଉସୀଙ୍କର ଗାଡି ଆସିଲା କି ନାହିଁ ଦେଖିବାକୁ । ତା' ପଛରେ ଧାଇଁଥାଏ ଆୟା ଇନ୍ଦୁ ।

ଦେଢ଼ ବର୍ଷର ଶିଶୁ ଲୋପା ସାମନାରେ ଅରୁଣ ରଖିଦିଏ ତା'ର ନୂଆ ପୁରୁଣା ଖେଳନା ସବୁ । ଖେଳଘରେ ସଜା ହୋଇଥାଏ ବାଘ, ସିଂହ, ଭାଲୁ, ମାଙ୍କଡ, ମଟରଗାଡି, ଟ୍ରେନ୍, ହେଲିକେପ୍ଟର, ନୂଆ ପୁରୁଣା ଯେତେ ଯାହା ଖେଳନା ।

ସେଇଠି ବସି ଚିତ୍କାର କରେ ଅରୁଣ, 'ମା' ଲୋପା କେତେବେଳେ ଆସିବ ?'

ପ୍ରାୟ ସପ୍ତାହର ଶେଷ ଦିନମାନଙ୍କରେ କିମ୍ବା ହାତରେ ଜରୁରୀ କାମ ନ ଥିଲେ ଦେଢ଼ବର୍ଷର ଶିଶୁ ଲୋପାକୁ ନେଇ ମଂଜୁଳା ଆସେ । ଘରେ ହସ, ଖୁସି, ଆନନ୍ଦର ସ୍ରୋତରେ ସଭିଏଁ ମଜ୍ଜି ରହନ୍ତି । ଲୋପା ଅସ୍ପଷ୍ଟ ଭାଷାରେ କଥା କହେ । ମଂଜୁଳା ଶିଖାଏ,

'କହ, ଭା-ଇ-ନା ।'

ଲୋପା କହେ, 'ଭା-ଇ-ନା ।' ସବୁ ଖେଳନା ଟଣାଟଣି କରି ଘାଣ୍ଟି ପକାଏ ସାନଝିଅଟି । ଅରୁଣ ତା'କୁ ଗେହ୍ଲା କରେ । ଖେଳନାଟାଏ ଭାଙ୍ଗିଲେ ବି ଲୋପାକୁ କିଛି କହେ ନାହିଁ ।

ପ୍ରଭାତଙ୍କ ଫ୍ୟାକ୍ଟ୍ରି ଅଫିସ୍‌ରେ ଜରୁରୀ ମିଟିଂ । ଅଥଚ ସାନ ଝିଅଟିର ଖେଳ ଦେଖି କିଛି ସମୟ ବସି ଯାଆନ୍ତି ସେ । ଶ୍ୱେତପଦ୍ମା ତାଙ୍କୁ ବାଧ କରି ପଠାଏ । ଅରୁଣର ଖେଳଘରେ ବସି ଇନ୍ଦୁ ପିଲା ଦୁହିଁଙ୍କୁ ଖେଳଉଥାଏ । ମଂଜୁଳା, ଶ୍ୱେତପଦ୍ମାଙ୍କର ଅନେକ କଥା ଯେପରି ବାକି ଥାଏ ସେଦିନ । ସେମାନଙ୍କ ଗପର ସ୍ରୋତ ବନ୍ଦହୁଏ ନାହିଁ । ସେ ଆଳାପରେ ଥାଏ ବେଶୀ ଭାଗ ଲୋପା ବିଷୟ । ମଂଜୁଳା ତା'ର ବଡ ପର୍ସରୁ କାଢ଼ି ଦେଖାଏ ବେବି ବୁକ୍ ।

ଲୋପାର ଜନ୍ମ ପରଠାରୁ ପ୍ରତିଟି କଥା ଟିପି ରଖିଛି ସେ । କୋଉ ତାରିଖରେ କି ନୂଆ ଶବ୍ଦ ସେ କହିଲା । ସେଦିନ ଲୋପାର ବୟସ କେତେମାସ କେତେ ଦିନ ଏବଂ କେବେ ଡାକିଲା ପ୍ରଥମେ ମା' ।

ସମୟର ପ୍ରତିଟି ପଦକ୍ଷେପକୁ ଉପଭୋଗ କରିଛି ମଂଜୁ । ଅଥଚ ଶ୍ୱେତପଦ୍ମା ? ମୁହୂର୍ତ୍ତକ ପାଇଁ ମଂଜୁଳା ଓ ତା'ର ଝିଅ ପାଇଁ ଶ୍ୱେତପଦ୍ମାର ମନରେ ଈର୍ଷାଭାବ ଦେଖାଦିଏ । ପର କ୍ଷଣରେ ଆଖିରେ ଲୁହ ଭର୍ତ୍ତି ହୋଇଯାଏ । ଠିକ୍ ଏଇ ରାତି ପରି ।

'ଦେଖ୍ ଶ୍ୱେତା, ଏମିତି ଯଦି ଅଯଥା ଇମୋସନାଲ୍ ହବୁ, ମୁଁ କିଛି କହିବି ନାହିଁ । ମୋ ଝିଅକୁ ନେଇ ମୁଁ ବାହାରିଲି ।'

ଶ୍ୱେତପଦ୍ମା ଲୁଗାକାନିରେ ଆଖି ପୋଛେ ।

ମା' .... ମା' । ସେ ପାଖରୁ ଧାଇଁ ଆସୁଛି ଶିଶୁ ଲୋପା ।

ଶ୍ୱେତପଦ୍ମା ତାକୁ କୋଳକୁ ଉଠେଇ ଆଣିଲା । ଗେହ୍ଲାକରି ବକ୍ଷରେ ଛଡାଇ ଧରିଲା । ଲୋପା ଥରେ ଶ୍ୱେତପଦ୍ମାକୁ ଚାହିଁଦେଇ ତା' ବେକର ଲମ୍ବା ସୁନା ଚେନ୍‌ଟି ଟାଣିବାରେ ଲାଗିଲା ।

ଶ୍ୱେତପଦ୍ମା ହସିଲା । ମଂଜୁଳା କହିଲା,

'ଥାଉ ଲୋପା, ସେଇଟା ତୁମର ଖେଳନା ନୁହଁ ।'

ସେ ପାଖରୁ ଅରୁଣ ଡାକୁଛି, 'ଲୋପା, ବଲ୍ ଖେଳିବୁ ? ଆ' ବଗିଚାକୁ ଯିବା ।'

ଇନ୍ଦୁ ତା'କୁ କାଖେଇ ନେଇ ବଗିଚା ଆଡେ ଯିବା ପାଇଁ ବାହାରିଲା । ଲୋପା ରାଜି ହେଲା ନାହିଁ ।

'ସେ ଥାଉ, ତୁ ଯା' ବୋଉଙ୍କ ପାଖରୁ ବୁଲି ଆସିବୁ । ପୁଝାରୀକୁ କହିବୁ ଶୀଘ୍ର କଫି ଦବ ।' ଇନ୍ଦୁକୁ ପଠାଇଦେଇ ଦୁହେଁ କଥାବାର୍ତ୍ତା ମଧରେ ମଜ୍ଜି ରହିଲେ । ଶ୍ୱେତପଦ୍ମାର ଲକେଟ୍ ଧରି ଖେଳୁଥାଏ ଲୋପା । ଶ୍ୱେତପଦ୍ମା ସତୃଷ୍ଣ ନୟନରେ ଚାହିଁ ତା'ର ଖେଳ ଦେଖୁଥାଏ ।

ପ୍ରଭାତ ଅଫିସ୍ ଯାଇସାରିଛନ୍ତି । ଲୋପାକୁ ନେଇ ଗଳ୍ପ ଶେଷ ହୁଏ ନାହିଁ ମଞ୍ଜୁ ଫେରିଯିବା ପର୍ଯ୍ୟନ୍ତ ।

ଅରୁଣ ଆସି ଲୋପାର ହାତ ଟାଣୁଛି, 'କହିଲି ନା, ତୁ ବଲ୍ ଖେଳିବୁ ମୋ ସାଙ୍ଗରେ ?'

ଇନ୍ଦୁ ଦୁଇ ପିଲାଙ୍କୁ ନେଇ ବାହାର ଲନ୍‌କୁ ଚାଲିଗଲା । ସକାଳୁ ବର୍ଷା ହୋଇ ଛାଡିଯାଇଛି । ଗଛପତ୍ର ଫୁଲଘାସରେ ଚକ୍ ଚକ୍ କରୁଛି ଖରା । ପିଲାଦୁହେଁ

ଏକାଠି ହସି ହସି ଦୌଡ଼ୁଛନ୍ତି । ଏସବୁ ଦୃଶ୍ୟକୁ ଫଟୋଟିଏ କରି ହୃଦୟରେ ଲୁଚେଇ ରଖୁଛି କି ଶ୍ୱେତପଦ୍ମା ।

'ପୁଣିକେବେ ଆସିବୁ, ମଂଜୁ ?'

'ତୁ ମୋତେ ଫୋନ୍ କରିବୁ, ମୋର କାମ ଅଛି । ଦିଲ୍ଲୀ ଯିବି, ସେତେବେଳେ ଝିଅକୁ ତୋ ପାଖରେ ଛାଡ଼ିଦେଇ ଯିବି । ମାତ୍ର ତିନି, ଚାରିଦିନ । ଆଚ୍ଛା, ଅରୁଣର ଜନ୍ମଦିନ କେବେ କହତ ?'

'ଡେରି ଅଛି । ବରଂ ଏମିତି କଲେ ଭଲ ହେବ । ତୁ ରାକ୍ଷୀ ପୂର୍ଣ୍ଣିମା ଦିନ ନିଶ୍ଚୟ ଆ । ଲୋପା ତା' ଭାଇନା ହାତରେ ରାକ୍ଷୀ ବାନ୍ଧିବ ନାହିଁ ?'

'ସତକଥା ତ । ତେବେ ତ ଖୁବ୍ ଶୀଘ୍ର ଦେଖାହେବ । ଏତେବଡ଼ କଥାଟା ମୁଁ ଭୁଲିଗଲି କେମିତି ?'

ଦୁଇ ବାନ୍ଧବୀ ହାତ ପାଖରେ ସ୍ୱର୍ଗ ପାଇବା ଭଳି ଉତ୍‌ଫୁଲ୍ଲ ହୋଇ ଉଠୁଥିଲେ ।

ଲୋପା ଭାତ ଖାଉଛି । ନିଜେ ଶ୍ୱେତା ତା'କୁ ମାଛରୁ କଣ୍ଟା ବାଛି ଖୁଆଇ ଦେଉଛି । ମାଛ ଭାତ ତା'ର ପ୍ରିୟ ଖାଦ୍ୟ । ଶ୍ୱେତପଦ୍ମା ଦୁଇ ଝୁଆଙ୍କ ପାଇଁ ନିଜେ ତିଆରି କରିଛି ମାଛ ଷ୍ଟୁ ।

ଅରୁଣ ସତେକି ଶାନ୍ତ ବାଧ୍ୟ ପିଲାଟିଏ । ଏଭଳି ସୁନ୍ଦର ଜୀବନ୍ତ କଣ୍ଢେଇଟିଏ ଦେଖି ମା'ର କଥାମାନି ସେ ସହଜରେ ଗାଧୋଇଛି । ଇନ୍ଦୁ ବାହାର କରିଥିବା ପୋଷାକଟି ବିନା ଅଭିଯୋଗରେ ପିନ୍ଧିଛି ।

ସେ ପାଖରୁ ପ୍ରଭାତଙ୍କର ପାଟି ଶୁଣାଯାଉଛି,

'ଆରେ ମଂଜୁ, ତୁମ ଛୋଟ ପରୀଟିକୁ ଆଜି ଏଠି ଛାଡ଼ିଦେଇ ଯାଅ । ଦେଖୁଛ ଶ୍ୱେତା, ଏ ପିଲା ଦୁହେଁ କି ଖୁସିରେ ଖେଳୁଛନ୍ତି ?'

ଲୋପା, ଅରୁଣ ବିଛଣାରେ ବସି ବହିରୁ ଚିତ୍ର ଖୋଜୁଛନ୍ତି ତ କେତେବେଳେ ଟ୍ରେନ୍ ଚଲେଇ ପାଟିରେ ସିଟି ବଜେଇବା ଭଳି ହୁସ୍ ହୁସ୍ କରୁଛି ଅରୁଣ । ଦିନ ଦୁଇଟାରେ ଅଫିସ୍‌ରୁ ଫେରି ଭୋକ ଭୁଲିଯାଇ ପିଲାଙ୍କ ସଙ୍ଗେ ପିଲା ହୋଇ ଖେଳି ବସିଲେ ପ୍ରଭାତ ।

ମଂଜୁଳା, ଶ୍ୱେତପଦ୍ମା ପରସ୍ପରକୁ ଚାହିଁ ରହିଥିଲେ କିଛି ସମୟ । ନିଜ ନିଜ ମଧ୍ୟରେ ଦୃଷ୍ଟି ବିନିମୟ କରି ସେମାନେ ଯାହା କଥାବାର୍ତ୍ତା କଲେ ପ୍ରଭାତ ସେସବୁ ବୁଝିବାକୁ ଆଦୌ ସମର୍ଥ ହେଲେ ନାହିଁ ।

ଖାଇବା ଟେବୁଲ ପାଖରେ ଶ୍ୱେତପଦ୍ମା, ପ୍ରଭାତ, ମଂଜୁଳା ସହଜ ଭାବରେ ଆଳାପ କରୁଥିଲେ । ଶ୍ୱେତପଦ୍ମାର ମନ ଭାରାକ୍ରାନ୍ତ । ହୃଦୟରେ ପଥର ଲଦି ହୋଇ ଓଠରେ ହସ ଟିକେ ପାଇଁ କମ୍ ପ୍ରଚେଷ୍ଟା ତା'ର ?

ସେତେବେଳେ ସେ ଭାବୁଥିଲା, ଆଃ ଏଇ ମୁହୂର୍ତ୍ତମାନଙ୍କୁ ଯଦି ମୁଁ ବେଶ୍ କିଛି ସମୟ ନିଜ ଅକ୍ତିଆରରେ ରଖି ପାରନ୍ତି ? ଲୋପା, ଅରୁଣ ଏକାଠି ଖେଳୁଥିବାର ଦୃଶ୍ୟଟି ଆଉ କିଛି ସମୟ ଦେଖି ପାରିନଥାଆନ୍ତି ?

ନା – ମଂଜୁ ଯିବା ପାଇଁ ପ୍ରସ୍ତୁତ ହେଲାଣି । ଲୋପାକୁ ଖେଳରୁ ଉଠେଇ ବୁଝାବୁଝି କରି ସେ କୋଳକୁ ଉଠେଇ ନେଲାଣି । ତା' ଝିଅକୁ ନେଇ ସେ ଏବେ ଚାଲିଯିବ । ପରେ ପରେ ଘେରି ଆସିବ ଅସୀମ ଶୂନ୍ୟତା । କାହାକୁ କହିବ ଶ୍ୱେତା ? କିଏ ତାକୁ ସାନ୍ତ୍ୱନା ଦେବ ? କିଏ କହିବ ତାକୁ,

'ଭାଗ୍ୟ, ଭଗବାନଙ୍କ ଉପରେ ବିଶ୍ୱାସ ରଖ ଶ୍ୱେତପଦ୍ମା !'

ଭୁବନେଶ୍ୱରରୁ କଟକ କେତେ ଅବା ରାସ୍ତା ? ଶ୍ୱେତପଦ୍ମାର ଧୈର୍ଯ୍ୟଚ୍ୟୁତି ହେଉଛି । ଡ୍ରାଇଭର ଶୀଘ୍ର ଆସି ଅପେକ୍ଷା କରିଛି । ଗାଡି ପଠାଇବ ନା ନିଜେ ଚାଲିଯିବ ? ନିଜେ ଯାଇ କୋଳେଇ ଆଣିବ ଲୋପାକୁ । ମଂଜୁଳାକୁ ଫୋନ୍ କରି ବ୍ୟସ୍ତ କରିବା ଠିକ୍ ନୁହେଁ । ମଂଜୁଳା ସିଟ୍ ବେଲ୍ଟ ଦେଇ ପଛ ସିଟ୍‌ରେ ବେବୀ ସିଟ୍ ରଖି ବସାଇଥାଏ ଲୋପାକୁ । ସେଲ୍‌ଫୋନ୍‌ରେ କଥା କହିବ, ନା – ଥାଉ । ଘରୁ ବାହାରି ଆସିଥିବ ଯଦି । ଶ୍ୱେତା ମଂଜୁଳା ଘରକୁ ଫୋନ୍ ଲଗାଇଲା ।

– ଭାଇନାର କଥା ମନେ ନାହିଁ । ରାକ୍ଷୀ ପୂର୍ଣ୍ଣିମାରେ ରାକ୍ଷୀ ବାନ୍ଧିବୁ ନାହିଁ ?

– ଭାଇନା ? ବାସ୍ କଣ୍ଠେଇର ଏତିକି ଉତ୍ତର । ବାକି ସବୁ ଅସ୍ପଷ୍ଟ ।

– ମୁଁ ଆସୁଛି ।

ପ୍ରଭାତ ତାଙ୍କର ନୂଆ କାର୍ ନେଇ ଅଫିସ୍ ବାହାରିଗଲେ । ଖୁବ୍ ଶୀଘ୍ର ଫ୍ୟାକ୍ଟ୍ରିରୁ ଫେରି ଆସିବାର ପ୍ରତିଶ୍ରୁତି ଦେଇଗଲେ ସେ ।

ନ ଆସିବାର ବାଟ କାହିଁ ? ସାତଜଣଙ୍କର ଆକ୍ରମଣ ! ସାତ ଭଉଣୀଙ୍କର ଚଢ଼ଉ ହେବ ସେଦିନ ତାଙ୍କ ଉପରେ ।

ଝଲମଲ ଶାଢ଼ି, ଗହଣା, ସୁଦୃଶ୍ୟ ରାକ୍ଷୀ, ମିଠା ପ୍ୟାକେଟ୍ ମାନ ନେଇ ସେମାନେ ପହଞ୍ଚିଯିବେ । ବାପ ଘର ଆସିବାର ଖୁସି ଅତୁଳନୀୟ । ସେ ଆନନ୍ଦ ଅନ୍ୟ ପ୍ରକାରର । ଶାନ୍ତ ନଦୀ ନୁହେଁ, ହସଖୁସିର ଝରଣାଟି ମାନ, ସତେକି ଅକସ୍ମାତ ଝରି ଆସିଛନ୍ତି ଏଇ ନିଃଶବ୍ଦ ଇଲାକାରେ ।

ସାତୋଟି ରାକ୍ଷୀ ବାନ୍ଧି ରାଜପୁତ୍ର ଭଳି ସିଂହାସନରେ ବସିଥିବେ ପ୍ରଭାତ । ରାଜକନ୍ୟାମାନେ ଭାଇଟି ପାଖରୁ ନେବେ ମନ ପସନ୍ଦର ଦାମୀ ଦାମୀ ଉପହାର । ସେ ବରାଦ ହୋଇଥିବ ବହୁତ ଦିନରୁ ।

ଶାଢ଼ି, ସୁନା ଗହଣା ତ ତୁଚ୍ଛ । ବହୁ ଦୁର୍ଲ୍ଲଭ ପଦାର୍ଥମାନ ଦାବୀ କରି ରଖନ୍ତି ସେମାନେ । କେତେବର୍ଷ ତଳେ - ଏମିତି ଦିନରେ, ସାନ ନଣନ୍ଦ ମୁହଁ ଫୁଲେଇଥିଲେ,

'ଯାହା ସବୁ ଡିଜାଇନ୍‌ର ଗହଣା ମାନ ମିଳୁଛି ନା, ତୁମେ ଦେଖୁଥିବ । ଏବେ ସୁନା କିଏ ପିନ୍ଧୁଛି ଭାଉଜ ? ବାଃ - ତୁମର ଏ ସେଟ୍‌ଟି ରେଆର୍ କଲେକ୍‌ସନ୍ ! ଖୁବ୍ ସୁନ୍ଦର ହୋଇଛି । ମୁଁ ଦେଖିବି, କୋଉଠି ମିଳୁଛି । ତେବେ ଭାଇନା ମୋ ପାଇଁ ଯାହା କିଣିଛନ୍ତି, ଠିକ୍ ଅଛି ।'

ଲାଲିମାର ଓଠରୁ ହସ ଲିଭିଗଲା । ସେ ଅଧିକ ନ କହି ନିରବ ହେଇଗଲା ହଠାତ୍ । ଏ ଦୃଶ୍ୟଟି କାହା ଦୃଷ୍ଟିରୁ ବାଦ୍ ଗଲା ନାହିଁ ।

ଶ୍ୱେତପଦ୍ମା ହସି ହସି କହିଲା, 'ଆରେ ଲାଲି, ଏଇଟା ପିନ୍ଧନ୍ତୁ । ମୁଁ ପରେ କିଣିବି । ଶ୍ୱେତପଦ୍ମା କାନ, ବେକରୁ ଦୁର୍ମୂଲ୍ୟ ଷ୍ଟୋନ୍ ସେଟ୍‌ଟି ଓହ୍ଲାଇବାର ଉପକ୍ରମ କରୁଥିଲା । ପ୍ରଭାତ ବାଧା ଦେଇ କହିଲେ, 'ଇଏ କ'ଣ, ଶ୍ୱେତା ? ମୋର ଜର୍ମାନୀ ଯିବାର ଅଛି, ମୁଁ ତା'ପାଇଁ ନେଇ ଆସିବି ।'

'ବାଃ - ଆମ ପାଇଁ କିଛି ନାହିଁ ।' ମିଳିତ ସ୍ୱର କେତୋଟି ଅଳି କଲେ ।

'ଯିଏ ପ୍ରଥମେ କହିଲା, ସେ ପାଇବ । ତୁମର ତ ଉପହାର ସବୁ ଖୁବ୍ ପସନ୍ଦ ହେଇଛି ।' ଲାଲିମାର ହସ ହସ ମୁହଁକୁ ଚାହିଁ ଉତ୍ତର ଦେଲେ ପ୍ରଭାତ ।

ଏ ଘରେ ପଇସାର ଅଭାବ ନାହିଁ । ବାହାହୋଇ ଯାଇଥିବା ଝିଅମାନେ ଭାଇ ପାଖରେ ଅଳି କରିବେ ନାହିଁ ତ କାହାକୁ କହିବେ ?

ଶ୍ୱେତପଦ୍ମାର ଭାଇ ଦୁହେଁ ଭଉଣୀର ମନ ଚିହ୍ନନ୍ତି ନାହିଁ । କେତେଥର ରେଜେଷ୍ଟ୍ରୀ ଡାକରେ ସେମାନଙ୍କ ପାଇଁ ରାକ୍ଷୀ, ଜନ୍ମଦିନର କାର୍ଡ ପଠାଇ ନିରାଶ ହୁଏ ଶ୍ୱେତା । ଉତ୍ତର ଫେରେ ନାହିଁ । ଭାଉଜମାନେ ବି ମନେପକାଇ ଦିଅନ୍ତି ନାହିଁ । ଏସବୁର ମୂଲ୍ୟ ବୁଝନ୍ତି ନାହିଁ ସେମାନେ । ତେବେ ଅନ୍ୟ ସମୟରେ କେବେ କିପରି ସେ ପାଖରୁ ଫୋନ୍‌ରେ କଥା ଦୁଇ ପଦ ଭାସି ଆସେ ।

''କିମିତି ଅଛୁ, ଶ୍ୱେତା ? ସବୁ ଭଲ ତ ।'' ସେତିକି ମାତ୍ର ସାଉଁଟି ରଖେ ଶ୍ୱେତପଦ୍ମା ।

'ଭାଇନା, ଥରେ ସମସ୍ତେ ଆସ । ମୋତେ ଦେଖି ଯିବାକୁ ଇଚ୍ଛା ହୁଏନା ?' ଏତିକି କହି ପାରେନା ସେ । ସେମାନେ ଆସନ୍ତି ବନ୍ଧୁର ସାଧାରଣ ସୌଜନ୍ୟ ରକ୍ଷାକରି ଯଦି କେବେ କିଛି ଉତ୍ସବ ଇତ୍ୟାଦିର ଆୟୋଜନ କରାଯାଏ ଭଉଣୀ ଘରେ । ସାଧାରଣ ଭାବରେ ଭାର, ବେଭାର ଦେବାରେ ମଧ୍ୟ କାର୍ପଣ୍ୟ କରନ୍ତି ନାହିଁ ।

ମଧ୍ୟବିତ୍ତ ଘରର ଝିଅ ଶ୍ୱେତପଦ୍ମା । ବାପା ଥିଲେ ଶାସନ ବିଭାଗର ଜଣେ ପଦସ୍ଥ କର୍ମଚାରୀ । ମାସକୁ ମାସ ପାଉଥିବା ଦରମା, ସହରରେ ଖଣ୍ଡିଏ ଆଧୁନିକ ରୁଚିସଂପନ୍ନ ଘର, ବାସ୍ ଏତିକି ମାତ୍ର ସଂପତ୍ତି । ସେତିକି ମଧ୍ୟରେ ପିଲା ତିନୋଟିଙ୍କୁ ଖୁବ୍ ଉଚ୍ଚଶିକ୍ଷା ଦେଇ ମଣିଷ କରିଥିଲେ ସେ ।

ପ୍ରତିଭାମୟୀ ଝିଅ ଶ୍ୱେତପଦ୍ମା । ଶ୍ୱେତପଦ୍ମାର ପଦ୍ମ ପାଖୁଡା ଭଳି ଦୁଇଟି କଥାକୁହା ଆଖି, ଉଜ୍ଜ୍ୱଳ ଚମ୍ପାରଙ୍ଗ, ଭଲପାଠ ପଢୁଥିବା କେତେଜଣଙ୍କ ମଧ୍ୟରେ ସେ ଯେ ଥିଲା ସ୍ୱତନ୍ତ୍ର । ବିଶେଷ କରି ୟୁନିଭରସିଟିର ଜଣେ ମେଧାବୀ, ଅଲ୍‌ରାଉଣ୍ଡର୍ ଛାତ୍ରୀ ଭାବରେ ସେ ପରିଚିତ ଥିଲା । ତୃତୀୟ ନଣନ୍ଦ ଲାଲିମାର ଘନିଷ୍ଠ ବାନ୍ଧବୀ ଶ୍ୱେତପଦ୍ମା ।

ଝିଅଟିକୁ ପ୍ରଭାତ ନିଜେ ଖୁବ୍ ପସନ୍ଦ କରିଥିବା ବିଷୟ ଭରଦ୍ୱାଜ ଜାଣିଥିଲେ । ପରିବାରର କୌଣସି ଏକ ଉତ୍ସବରେ ଲାଲିମା ନିମନ୍ତ୍ରଣ କରିଥିଲା ଶ୍ୱେତପଦ୍ମାକୁ ।

ଗାୟତ୍ରୀ ନିଜର ମତ ଜଣାଇବାରେ ଖୁବ୍ ବିଳମ୍ବ କରୁଥିଲେ । ସେ କହନ୍ତି,

'ଏତେ ବ୍ୟସ୍ତ କାହିଁକି ଯେ ? ଆମର ଏକମାତ୍ର କୁଳନନ୍ଦନ ପାଇଁ ରାଜାଘରୁ ପ୍ରସ୍ତାବ ଆସିବ । ଏମିତି ତରତର ହେବା କ'ଣ ଦରକାର ?' ସ୍ୱାମୀଙ୍କୁ ଉତ୍ତର ଦିଅନ୍ତି ସେ ।

ଭରଦ୍ୱାଜ ନିରବ ରହନ୍ତି । ସାରା ପରିବାର, ବିଶେଷ କରି ପ୍ରଭାତଙ୍କର ପସନ୍ଦ ଜାଣିବା ପରେ ମଧ୍ୟ ଗାୟତ୍ରୀଙ୍କର ଅମତ ହେବା ବିଷୟଟି ଭରଦ୍ୱାଜଙ୍କୁ ଭଲ ଲାଗୁ ନ ଥିଲା । ପ୍ରାୟ ସେହି ସମୟରେ ଅକସ୍ମାତ୍ ଦିନେ ଅସୁସ୍ଥ ହୋଇପଡିଲେ ସେ । ମାତ୍ର ସାତଟା ଦିନର ଅସୁସ୍ଥତା; ସବୁ ଶେଷ ହୋଇଗଲା ।

ମଣିଷଟି କ'ଣ ଜାଣିଥାଏ କ'ଣ ହେବାକୁ ଅଛି ଆଗକୁ ! ଭରଦ୍ୱାଜ ସଂସାର ଛାଡିବାର ପରେ ଶ୍ୱେତପଦ୍ମା ବୋହୂ ହୋଇ ଆସିଲା ଏ ଘରକୁ । ଗାୟତ୍ରୀଙ୍କର କିଛି କହିବାର ନ ଥିଲା ମୃତ ସ୍ୱାମୀଙ୍କର ଇଚ୍ଛା ବିରୁଦ୍ଧରେ ।

କାହାକୁ ଦୋଷ ଦେବେ ଶ୍ୱେତପଦ୍ମା ? ଅତୀତରେ ତା' ଶାଶୂ କମ୍ ଅପମାନ ଦେଇନାହାଁନ୍ତି ତା'ର ଭାଇମାନଙ୍କୁ । ଏବେ ବି ଧିକାର୍ କରି କହିବା ବନ୍ଦ ହୋଇନାହିଁ ତାଙ୍କର ।

'ହଁ ମ, ବାପା, ମା' ନଥିବା ଝିଅ । ଭାଇ ଭାଉଜ ନିଜ ସଂସାର ଦେଖିବେ ନା ଭଉଣୀକୁ ଦେଖିବେ ? କିଭଳି ଭାଇ ହୋଇଛନ୍ତି କେଜାଣି ? ଖଟିଖିଆ ମୂଲିଆ ତ ଖଦି ଖଣ୍ଡେ, ଉଖୁଡା ହାଣ୍ଡିଏ, ନଡିଆ, କଦଳୀ ଦି'ପୁଞ୍ଜା ନେଇ ଭଉଣୀକୁ ସଂଖୋଳି ଯାଉଛି ।'

ଏବେକୁ ପ୍ରଭାତ ମା'ଙ୍କ କଥା ଶୁଣି ନିରବ ରହିପାରନ୍ତି ନାହିଁ । ପାଟିକରି ଉଠନ୍ତି ।

'ଏତେ ସବୁ ବାଜେ କଥା କାହିଁକି କହୁଚୁ ?'

ଗାୟତ୍ରୀଙ୍କ ସ୍ୱର କମିଯାଏ ଧୀରେ । ତେବେ କଥା ବନ୍ଦ ହୁଏ ନାହିଁ । ଶ୍ୱେତପଦ୍ମା ବୁଝେଇ ଦିଏ, 'ଜିନିଷ ଅପେକ୍ଷା ସ୍ନେହ, ଶ୍ରଦ୍ଧାର ମୂଲ୍ୟ ଅଧିକ, ବୋଉ । ଫୋନ୍ କରି ସେମାନେ ଯଦି ଭଉଣୀର ସୁଖ, ଦୁଃଖ ବୁଝୁଛନ୍ତି, ସେଇ ମୋ ପାଇଁ ଯଥେଷ୍ଟ । ରାକ୍ଷୀ ପୂର୍ଣ୍ଣିମାରେ ଭାଇ ହାତରେ ରାକ୍ଷୀ ବାନ୍ଧିବା କୋଉ ଅବା ଆମ ଘରର ଚଳଣି ? ନିଜ ଇଚ୍ଛାରେ ଖୁସିରେ ଯିଏ ମନ କରୁଛନ୍ତି, ପାଳୁଛନ୍ତି ।'

ଗାୟତ୍ରୀ ଚୁପ୍ କରି ଯାଆନ୍ତି । ମନକୁ ଆସେ, 'ମୋର କି ଗରଜ ପଡିଥିଲା ଏସବୁ କଥା ଉଠେଇବା ? କୋଉ ଦୁଷ୍କୃତରୁ କର୍ମଫଳ ଭୋଗ କରୁଛି । ନୋଚେତ୍ ଏ ବୁଢ଼ୀ ବୟସରେ ଏତିକି ଅପମାନିଆ କଥା ଶୁଣନ୍ତି ? ହଁ - ଅପମାନ ହିଁ ମୋର ପ୍ରାପ୍ୟ ।'

ପକ୍ଷାଘାତ ପୀଡିତା ଗାୟତ୍ରୀ ସବୁ ସମୟରେ ବିଛଣାରେ ପଡିଥିବେ । ଇନ୍ଦୁ ଆସିଲେ ବହୁ କଷ୍ଟରେ କେତେବେଳେ ଆସି ତାଙ୍କୁ ବସେଇ ଦିଏ ହୁଇଲ୍ ଚେୟାରରେ ।

ମନେ ମନେ ଗୁଣି ହୁଅନ୍ତି ସେ, ଏଇୟା ଥିଲା ମୋ ଭାଗ୍ୟରେ ? ଯୋଉପୁଅ ମା' କଥାକୁ ବେଦର ଗାର କରିଥିଲା ସେ ଏବେ ପାଖକୁ ଆସେ ନାହିଁ । ଦିନେହେଲେ ଭଲମନ୍ଦ ବୁଝେ ନାହିଁ, ମୋ ମୁହଁକୁ ଚାହେଁ ନାହିଁ । ଏମାନଙ୍କ ପାଇଁ ମୁଁ କେତେ ଘାଣ୍ଟି ହୋଇଛି ? ସାତ ସାତଟା ଝିଅ ଜନ୍ମ କରି ନର୍କବାସ କରିଛି । ସେତେବେଳେ କ'ଣ ଏତେ କଥା ଥିଲା ।

'ଥରକୁ ଥର ଝିଅ ଜନମ କରୁଛି, ଅଲକ୍ଷଣୀ !'

ଆହା, ଗାୟତ୍ରୀଙ୍କର ମନେପଡେ ଶାଶୂଙ୍କର ଅତ୍ୟାଚାର କଥା । ତାଙ୍କଠୁଁ କମ ଗୋଇଠା ମାଡ ସେ ଖାଇ ନାହାଁନ୍ତି ? ଭୋକ ଶୋଷରେ ତଣ୍ଟି ଶୁଖିଗଲେ ବି ଶାନ୍ତିରେ ବସି ଖାଇପାରନ୍ତି ନାହିଁ ସେ କେବେ । ସ୍ୱାମୀ ଭରଦ୍ୱାଜ ସହରରେ ନିଜ ବ୍ୟବସାୟ ନେଇ ବ୍ୟସ୍ତ । ଏଣେ ଘର ତିଆରି ଚାଲିଥାଏ । ସବୁକଥା ଲେଖି ଚିଠି ପଠାନ୍ତି । ତାଙ୍କ ପାଇଁ ଅଲଗା ଖାମ୍‌ରେ ଟଙ୍କା ପଠାନ୍ତି ।

ଶାଶୂଙ୍କର ଶ୍ୱେନ ଦୃଷ୍ଟିରୁ ଏସବୁ ବାଦ୍ ଯାଏନା । ପତ୍ରବାହକ ଯାଉ ନ ଯାଉଣୁ ଟଙ୍କା ଖାମ୍‌ଟା ଚିଠି ସହ ଝାମ୍ପି ଆଣନ୍ତି ସେ ଗାୟତ୍ରୀଙ୍କ ଠାରୁ ।

'ନିର୍ଲଜି, ସବୁ ଲାଜ ସରମ ପୋତି ଖାଇଲୁ । ଏ ଘରେ ଭାଗ ବସିବ ? ମୁଁ ଘରସାରା ଲୋକଙ୍କର ପାଟି ପାଖକୁ ଭାତଗୁଣ୍ଡା ସଜାଡିବି । ତୁ ପୁଣି ଅଲଗା କରି ଟଙ୍କା ସଞ୍ଚିବୁ ।'

ଗାୟତ୍ରୀ ଝିଅଗୁଡାଙ୍କୁ ଖୁନ୍ଦାଏ, ବିଧାଏ ଦେଇ ଶାଶୂଙ୍କ ଉପରେ ଜମି ରହିଥିବା କ୍ରୋଧ ଉଦ୍‌ଗାରଣ କରନ୍ତି । କାହାକୁ କିଛି କହିପାରନ୍ତି ନାହିଁ । ଯାହାକୁ କହନ୍ତେ ସେ ତ ସହରରେ ଝାଳନାଳ ହୋଇ କଣ୍ଟ୍ରାକ୍ଟରୀ କାମରେ ଲାଗି ଥାଆନ୍ତି ।

ଏ ପାଖରେ ଶାଶୂ, ପିଉସୀଶାଶୂ, ଅବିବାହିତ ନଣନ୍ଦ, ଦିଅର, ନିଜର ସାନ ସାନ ଝିଅ, ପୁଅ ।

ସକାଳ ପହରୁ ଅଧରାତିରେ ବିଛଣାକୁ ଯିବା ପର୍ଯ୍ୟନ୍ତ କ୍ରୀତଦାସୀ ଭଳି ଖଟୁଥିବେ ଗାୟତ୍ରୀ ।

ସେଦିନ କ'ଣ ଓଷାବାର ଥିଲା । ସାନପିଲାଟା ରାତିରେ ଶୋଇଲା ନାହିଁ । ସାରାରାତି ଅନିଦ୍ରା ରହି ସକାଳୁ ତାଙ୍କର ଆଖି ଲାଗିଯାଇଛି ।

ଶାଶୂଙ୍କର ଘର ପୋଡିଯିବା ପାଟିରେ ନିଦ ଭାଙ୍ଗିଗଲା । ଘର ସାରା ସମସ୍ତେ ଶୋଇଛନ୍ତି, ସେଥିପାଇଁ ଅଭିଯୋଗ ନାହିଁ । ଅଥଚ ରାତି ନ ପାହୁଣୁ ଗାୟତ୍ରୀଙ୍କ ଉପରେ ସବୁତକ ରାଗ। ବିଧବା ପିଉସୀଶାଶୂ ପାଳି ଧରିଛନ୍ତି,

'ଏବେଠୁ ଶାସନରେ ନରଖିଲେ ସେ ଉପରମୁହାଁ ହୋଇଯିବ ଲୋ, ନୂଆବୋଉ ।'

ଗାୟତ୍ରୀଙ୍କ ଆଖିରୁ ନିଦ ଛାଡି ନାହିଁ । ବିଛଣାରେ ଉଠି ବସିଲେ ସେ କୋଳ ଛୁଆଟା ଉଠି କାନ୍ଦୁଛି, ତଥାପି ଶାଶୂଙ୍କର ଦୟାମାୟା ନାହିଁ । ଗାୟତ୍ରୀଙ୍କ ବାପ ଘରର ସପ୍ତପୁରୁଷଙ୍କୁ ଶୋଧିବାରେ ଲାଗିଛନ୍ତି ସେ । ଯାତେ ଲକ୍ଷ୍ମୀଛାଡୀ ବୋହୂ ଭଲ ଦିନଟାରେ ଶୋଇ ରହିଛି, ସେ କଥା ମଧ କହିବାରେ ଲାଗିଛନ୍ତି ଶାଶୂ ବାରମ୍ବାର ।

'ଏ ଭୋର୍ ବେଳାଟାରେ କାହାକୁ ଆଶୀର୍ବାଦ କରୁଛୁ, ବୋଉ ?' ଭୁବନେଶ୍ୱରରୁ ରାତି ଚାରିଟାରୁ ବାହାରି ସକାଳୁ ସକାଳୁ ଗାଁରେ ପହଞ୍ଚିଗଲେ ଭରଦ୍ୱାଜ । ମାତ୍ର ଦେଢ଼ଘଣ୍ଟାର ରାସ୍ତା । ସାନ ଭଉଣୀଙ୍କୁ ଦୁଇ କପ୍ ଚା' ବରାଦ କରି କହିଲେ,

'ମୋତେ କପେ ଦେ, ଆଉ ସେ ଜିପ୍ ଡ୍ରାଇଭର୍‌କୁ କପେ ଚା' ଦେବୁ ।'

'ଯା, ଗୋଡହାତ ଧୋଇପକା, ବୋହୂ ଉଠିଲାଣି, ଜଳଖିଆ କରିଦେବ ।' ଗାୟତ୍ରୀ ଶାଶୂଙ୍କର ପରିବର୍ତ୍ତିତ ସ୍ୱର ଶୁଣି ଆଶ୍ୱସ୍ତ ହେଲା ।

ଭରଦ୍ୱାଜ କହିଲେ 'ଦେଖ ବୋଉ, ମୁଁ ଆଜି ଫେରିଯିବି ଭୁବନେଶ୍ୱର । ମୁଁ ଆସିଛି ପିଲାମାନଙ୍କୁ ନେଇଯିବି ସାଙ୍ଗରେ ।'

'ଖବର ନାହିଁ, କିଛି ନାହିଁ । ହଠାତ୍ ଆଜି ?' ଗାୟତ୍ରୀଙ୍କ ଶାଶୂ ବ୍ୟସ୍ତ ବିବ୍ରତ ହୋଇ କହିଲେ ।

'ଏଥିରେ ବ୍ୟସ୍ତ ହେବାରେ କ'ଣ ଅଛି ? ଏବେ ଗଲେ ପିଲାମାନେ ସେଠି ସ୍କୁଲ୍‌ରେ ନାଁ ଲେଖେଇବେ । ମୋର ଏ ଦୁଇଦିନ କମ୍ ଟିକେ କାମ ଅଛି, ଘର ପ୍ରାୟ ସରି ଆସିଛି । ଗାୟତ୍ରୀ ଗଲେ ଭଲରେ ଗଣ୍ଡେ ଖାଇବାକୁ ମିଳିବ ।'

'ଯାହା ତୋର ଇଚ୍ଛା ।'

ଶାଶୂଙ୍କର ଇଚ୍ଛା, ଅନିଚ୍ଛା, ତାଙ୍କ ମନୋଭାବ ବୁଝିବାକୁ ପୁଅ ବୋହୂଙ୍କର ସମୟ ନ ଥିଲା । ଗାୟତ୍ରୀ ଯେ ମୁକ୍ତି ଖୋଜୁଥିଲେ । ପିଲାଙ୍କୁ ନେଇ ସେଇ ଯେ ସେ ଗାଁରୁ ଆସିଛନ୍ତି, ଆଉ କେବେ ବି ଯାଇନାହାଁନ୍ତି । ଦିଅର, ନଣନ୍ଦମାନଙ୍କର ବାହାଘର ଠାରୁ ଆରମ୍ଭ କରି ଶାଶୂ, ଶ୍ୱଶୁରଙ୍କ ଶ୍ରାଦ୍ଧ ସବୁ ଏଇ ଘରେ ।

ଏବେ ସେ ବୃଦ୍ଧ, ରୁଗ୍‌ଣ । ତଥାପି ବଂଚିବାକୁ ହେବ ମୃତ୍ୟୁ ନ ଆସିବା ପର୍ଯ୍ୟନ୍ତ ।

'କେତେ ସହିବି ଠାକୁରେ ?' ଗାୟତ୍ରୀ ଠାକୁରଙ୍କୁ ବି ହାତ ଯୋଡି ପାରିଲେ ନାହିଁ ।

ବୋହୂ ଶ୍ୱେତପଦ୍ମା କେବେହେଲେ ତାଙ୍କୁ ହତାଦର କରି ନାହିଁ । ସକାଳୁ ଆସେ ଗରମ ଚା'ର ଫ୍ଲାକ୍ସ ନେଇ । ଦେହମୁଣ୍ଡରେ ହାତ ମାରି କହେ, 'ବୋଉ, ଆଜି ଦେହ କିମିତି ଲାଗୁଛି ? ଇନ୍ଦୁ, ତୋର ଫୁଲତୋଳା ସରିନାହିଁ ? ଦେ ଫୁଲଡାଲାଟା ମୋତେ ଦେଲୁ, ମୁଁ ତୋଳେ କିଛି ଫୁଲ । ତୁ ବୋଉଙ୍କୁ ଦାନ୍ତ ଘସେଇ ଦେଇ ଚା', ବିସ୍କୁଟ୍ ଖୁଆଇ ଦେ । ବିଛଣା ଚଦରଟା ବଦଳେଇ ଦେବୁ ଆଗ, ଚେୟାର୍‌ରେ ବସେଇ ଆରାମରେ ତେଲ ଘସିବୁ । ତର ତର ହେବୁ ନାହିଁ ।'

'ନା - ବୋହୂକୁ ନିନ୍ଦା କାହିଁକି କରିବି ? ସବୁ ମୋର କର୍ମଫଳ ।' ନିରବରେ ଭାବୁଥାଆନ୍ତି ଗାୟତ୍ରୀ । ଚା'ଟା ଫ୍ଲାସ୍କରେ ରହିବ ଦାନ୍ତଘଷା ସରିବାଯାଏ । ଇନ୍ଦୁ ତାଙ୍କୁ କପ୍‌ରେ ଢ଼ାଳି ଚା' ପିଆଇଦେବ । ଚା'ରେ ବୁଡାଇ ବିସ୍କୁଟ୍ ଚାରିଖଣ୍ଡ ଖୁଆଇ ଦେବ । ତା' କାମରେ ହେଳା ନାହିଁ । ବୋହୂ ଯେ ଇନ୍ଦୁର ପରିବାର ପୋଷୁଛି । ଘର ତୋଳି ଦେଇ ରଖେଇଛି । ଇନ୍ଦୁର ଗେରସ୍ତକୁ ଫ୍ୟାକ୍‌ଟ୍ରିରେ କାମ ଦେଇଛି ପ୍ରଭାତ । ତା' ପିଲାଟିକୁ ଭଲ ସ୍କୁଲ୍‌ରେ ପଢ଼ଉଛନ୍ତି ଟଙ୍କା ଖର୍ଚ୍ଚ କରି । ସେ ଟଙ୍କା ଖର୍ଚ୍ଚର କ'ଣ ହିସାବ ଅଛି ? ଖାଇବା ଖରଚ ତ ଏଇ ଘରେ ଉଠିଯାଉଛି ।

ହଉ, ଯାହା ସେମାନଙ୍କ ଇଚ୍ଛା । ମୁଁ କାହିଁକି ଯେ ସବୁ କଥାରେ ମୁଣ୍ଡ ଖେଳାଏ ? ଏଇ କଥା କହେ ଲାଲି । ଠିକ୍ ଅଛି ଯାହା ଯେତିକି ମୋତେ ମିଳୁଛି ସେଇ ମୋର ଯଥେଷ୍ଟ ।

ପ୍ରଭାତର ଜନ୍ମ ପରେ ଗୋଟିଏ ପରେ ଗୋଟିଏ ହୋଇ ସାତ ଝିଅ ଆସିଲେ କୋଳକୁ, ଯୁବାକାଳ ବିତିଗଲା ପିଲାଙ୍କ ଖବର ବୁଝି ବୁଝି, ଟିକିଏ ଶାନ୍ତି ପାଇଲିନି । ସେ କହନ୍ତି, 'ସମୟ କୁଆଡେ ଚାଲିଯାଉଛି କି ? ପିଲାଙ୍କୁ ନେଇ ତ ଆମର ଶାନ୍ତି । ଆମ ପିଲା, ତାଙ୍କୁ ଜଂଜାଳ ଭାବିଲେ ହବ ?' ଆହା କେତେ ସହିବାବାଲା ! କେତେ ଶାନ୍ତ ! ତାଙ୍କ ବୁଝାଇବାରେ ଅଧେ ଦୁଃଖ ଭୁଲି ଯାଆନ୍ତି ଗାୟତ୍ରୀ, ଭୁଲି ଯାଇଥିଲେ ସେ ଶାଶୂଙ୍କର ତାଡନା ।

ଗାୟତ୍ରୀ ଆଶା କରିଥିଲେ, ପିଲାଙ୍କ କାମ ଶେଷ କରି ଟିକିଏ ସୁଖରେ ବସିଥାଆନ୍ତେ । ସେ ତ ବାଟକାଟି ଚାଲିଗଲେ ଅଧା ରାସ୍ତାରୁ । ପ୍ରଭାତର ବାହାଘର ଦେଖି ବି ପାରିଲେ ନାହିଁ ।

'ବୁଢ଼ୀମା' ଭଲ ଦିନଟାରେ ଲୁହ ଗଡଉଚ କାହିଁକି ? ଆଜିପରା କେତେ ଲୋକ ଘରକୁ ଆସିବେ । ଭୋଜିଭାତ ହବ ।' ଇନ୍ଦୁ ଚା', ବିସ୍କୁଟ୍ ଖୁଆଇ ଦେବାବେଳେ କହିଲା ।

'କାହିଁକିଲୋ ? କି ଦିନ କି ଆଜି ? ମୋତେ କିଏ ଏସବୁ କହୁଚି ଯେ ମୁଁ ଜାଣିବି ? ଭଲ ମନ୍ଦ ଦିନରେ ମୋର କ'ଣ ଥାଏ ?'

'ମା' ଗଲେଣି କଟକ, ତାଙ୍କ ସାଙ୍ଗ ମଂଜୁଳା ମ୍ୟାଡାମ୍ । ତାଙ୍କ ଝିଅକୁ ନେଇ ଆସିବେ । ସେମାନେ ପରା ଫୋନ୍‌ରେ କଥାବାର୍ତ୍ତା ହେଉଥିଲେ ।'

ଗାୟତ୍ରୀ ଉତ୍ତର ନ ଦେଇ ମୁହଁ ଗମ୍ଭୀର କଲେ । ଇନ୍ଦୁ ଖୁସିରେ କହୁଥାଏ,

'ନାନୀମାନେ, ଜୋଇଁବାବୁ ସବୁ, ସେମାନଙ୍କ ପିଲାମାନେ ସମସ୍ତେ ପହଞ୍ଚିଯିବେ । ଆଗରୁ ରନ୍ଧାବଢ଼ା ନ ହେଲେ ହେବ ? ପୂଝାରୀ ନନା ଚାଉଳ ବାଛି ଦେବାକୁ ଡାକୁଥିଲେ ଯେ । ତମେ ଝଅଟ ପିଇ ଦବଟି । ଆଜି ତୁମ ଗାଧୁଆ ଡେରିହବ ।'

'ତୋ ଇଚ୍ଛା, ଯାହା କରିବୁ । ମୋତେ କାହିଁକି କହୁଛୁ ? ମୋର ଏସବୁରେ କ'ଣ ଅଛି ?'

'ଦେଖ ମ, କିଭଳି ମଣିଷ ? ତୁମ ପିଲାଏ ଖୁସୀ ହେଉଛନ୍ତି । ତୁମେ ଆଶୀର୍ବାଦ କରନ୍ତନା ସେମାନଙ୍କୁ ।'

ବୁଢ଼ୀ ଉତ୍ତର ଦେଲେ ନାହିଁ । ସେ ଜାଣନ୍ତି ପୁଅ, ବୋହୂ ତାଙ୍କୁ ପର ବୋଲି ଭାବନ୍ତି । ଯେତେ କଲେ, ଦେଲେ ନେଲେ କ'ଣ ହେବ ? ମା' ମନ ବୁଝୁଛି କିଏ ? ଇଚ୍ଛା ହୁଏ ପଚାରି ଦେବାକୁ ।

'କ'ଣ ଭୁଲ କଲି କୁହତ ? ସବୁ ତ ଏଇ ଘରର ମଙ୍ଗଳ ପାଇଁ, ତୁମ ଦୁହିଁଙ୍କର ସୁଖ ପାଇଁ ।'

ଠାକୁରେ ବୁଝିଲେ ନାହିଁ, ଆଉ ବା କିଏ ତାଙ୍କୁ ଜାଣିବ ? ଗାୟତ୍ରୀ ନିଜେ କ'ଣ ଥିଲେ ?

ହେଇତ କେତଟା ବର୍ଷ ତଳର କଥା । ପାଟିକରି ଘର କଂପେଇ ଦେଉଥିଲେ ସେ । ତାଙ୍କ କଥା ଏ ଘରେ ଅନ୍ୟଥା ହେଉନଥିଲା । ସାରା ଘର, ପରିବାରର ସେ ଥିଲେ ସାମ୍ରାଜ୍ଞୀ । ତାଙ୍କର ଆଦେଶ, ତାଙ୍କର ନିର୍ଦ୍ଦେଶକୁ ଚାହିଁ ବସିଥିବେ ଘରେ କାମ କରୁଥିବା ଲୋକମାନେ । ବୋହୂ କ'ଣ ଭାବେ ସେ ଜାଣି ପାରନ୍ତି ନାହିଁ । ତେବେ ପ୍ରଭାତ କେବେ ହେଲେ ତାଙ୍କର ଅବାଧ ହୋଇନାହିଁ । କିନ୍ତୁ - କ'ଣ ହେଲା ? କି ବିପର୍ଯ୍ୟୟ ସୃଷ୍ଟି ହେଲା ? କାହିଁକି ଦୂରେଇ ଗଲା ପୁଅ ? କାହା ଅଭିଶାପରେ ଭୁଷୁଡି ପଡିଲା ସୁଖଶାନ୍ତିର ଦୁର୍ଗ ?

ଭୁଲ୍ .... ଅକ୍ଷମଣୀୟ ଭୁଲ, ଅହମିକାରେ ଅନ୍ଧ ହୋଇ ସେ ଯଥେଚ୍ଛାଚାର ଶାସନ କରିଥିଲେ । ହୋଇପାରେ ତାଙ୍କର ସେଇ ସ୍ୱଭାବ ପାଇଁ ସେ ପଡି ରହିଛନ୍ତି ଅଲୋଡା, ଅଖୋଜା ହୋଇ । ଏଭଳି ଜୀବନଟା ଯେ ଏତେ ସହଜରେ ଯିବ ନାହିଁ । କିଏ ଜାଣେ କେତେଦିନ ତାଙ୍କୁ ଭୋଗିବାକୁ ହବ ?

କେତେବେଳେ କ'ଣ ମନେ କରନ୍ତି ଗାୟତ୍ରୀ । କେତେବେଳେ ଅତୀତର ଭୂତ ତାଙ୍କ ମନକୁ ଗ୍ରାସ କରେ । ଅନ୍ୟ କେଉଁ ସମୟରେ ଜୀବନର ବ୍ୟର୍ଥତା, ଅସାରତା ଅନୁଭବ କରି ସେ କ୍ଳାନ୍ତ ହୋଇ ପଡନ୍ତି । ନିଜକୁ ସାନ୍ତ୍ୱନା ଦେବାକୁ ସେ ରାସ୍ତା ଖୋଜି ପାଆନ୍ତି ନାହିଁ । ସହାନୁଭୂତିର କଥା ପଦେ କହିବାକୁ ତାଙ୍କ ପାଖକୁ ଆସିବାକୁ କାହାରି ସମୟ ନ ଥାଏ ।

'ମୋ ପାଇଁ ସଂସାରର ସବୁ ସୁଖ ଶେଷ ହୋଇଯିବା ପରେ ଆଉ କାହିଁକି ଯେ ମୋତେ ବଂଚାଇ ରଖିଚ ?' ଏହି ଅଭିଯୋଗ ପରମ କର୍ତ୍ତାଙ୍କୁ ଜଣାନ୍ତି ସେ ବାରମ୍ବାର ।

'ମା', ଲୋପାକୁ ଆମେ ଛାଡିବାନି । ସେ ଆମଘରେ ରହିବ । ମୋ ସାଙ୍ଗରେ ଖେଳିବ, ସ୍କୁଲ୍ ଯିବ ଗାଡିରେ ବସି । ତାକୁ ମୁଁ ସବୁ ଖେଳନା ଦେଇଦେବି । ତାକୁ ପାଠ ପଢ଼େଇବି ।'

ଅରୁଣକୁ ଏକ ଲୟରେ ଚାହିଁ ତା' କଥା ଶୁଣୁଥାଏ ଲୋପା, କେତୋଟି ନୂଆ ଶବ୍ଦର ଅସ୍ପଷ୍ଟ ଉଚ୍ଚାରଣ କରୁଥାଏ ସେ । ତା'ର କଥାର ସ୍ରୋତ ବନ୍ଦ ହେଉନ ନାହିଁ । ସେ ଅରୁଣର ହାତ ଟାଣୁଛି ।

'ଭାଇନା ... ଆ ... ବାହାଲକୁ ... ।'

'ଦେଖୁଚ ମା', ଲୋପା ମୋତେ ଡାକୁଚି ।'

ଭାଇ ଭଉଣୀ ଦୁହିଁଙ୍କର ସ୍ନେହ, ଆନ୍ତରିକ ଶ୍ରଦ୍ଧା ଦେଖି ଶ୍ୱେପଦ୍ମା ଆତ୍ମବିସ୍ମୃତ ହେଉଥାଏ ।

'ତୁ ଆମ ଝିଅ, ତୋତେ ମୁଁ ଛାଡିବିନି, ଜମା ଦେବି ନାହିଁ ମଂକୁ ମାଉସୀଙ୍କୁ ।'

'ଆରେ ଆରେ ଏ କ'ଣ କରୁଛ, ଅରୁବାବୁ ? ଝିଅ ପଡିଯିବ ।'

ଇନ୍ଦୁ ଧାଇଁ ଆସି ଲୋପାକୁ କାଖ କରି ଠାକୁରଘର ପାଖକୁ ନେଇଗଲା । ପ୍ରଭାତଙ୍କର କ'ଣ ଚିନ୍ତା ? ତାଙ୍କ ନୂଆ କ୍ୟାମେରା, ଭିଡିଓ କ୍ୟାମେରା ଧରି ସେ ପ୍ରସ୍ତୁତ ହୋଇ ବୁଲୁଛନ୍ତି ଘରସାରା । ପ୍ରତ୍ୟେକଟି ଲୋକକୁ ନିରୀକ୍ଷଣ କରି ଦେଖୁଛନ୍ତି, କିଏ କେଉଁଠି କ'ଣ କରୁଛି ? କି ପ୍ରକାର କାମରେ ବ୍ୟସ୍ତ ରହିବା ସମୟରେ ତା'ର ମୁଖଭଙ୍ଗୀ କିପରି ହେଉଛି ।

ବଗିଚାର ଫୁଲ, କଢ଼ି, ପ୍ରଜାପତି, କୃତ୍ରିମ ହ୍ରଦରେ ପହଁରୁଥିବା ହଂସଯୁଗଳ କିଛି ବାଦ୍ ଯାଏନି ଥରେ ସେ କ୍ୟାମେରା ଧରିବାକୁ ସମୟ ପାଇଲେ ।

ପ୍ରଭାତଙ୍କର ମାସିକ ଆୟର ଏକ ଚତୁର୍ଥାଂଶ ଖର୍ଚ୍ଚ ହୁଏ ଏହି ଫଟୋ ଉଠାରେ । ପିଲାଦିନରୁ ଏହି ସୌଖୀନ୍ ଇଚ୍ଛାଟି ପାଇଁ କେବେ କେବେ ଭରଦ୍ୱାଜ ଅସନ୍ତୋଷ ପ୍ରକାଶ କରିଛନ୍ତି ।

'ପାଠ ପଢ଼ିବୁ ? ନା, ଆଉ ଦରକାର ନାହିଁ ? ଯଥେଷ୍ଟ ହେଲାଣି, ଯା ଏଥର ଫଟୋ ଷ୍ଟୁଡିଓ ଖଣ୍ଡେ କରି ବସ୍ । କିଛି ତ ଅର୍ଥ ଆୟ ହେବ ।'

'କାହିଁକି ବ୍ୟସ୍ତ ହଉଛ, ବାପା ? ମୁଁ ଯଦି ଫଟ ଦୋକାନ କରିବି ମୋର ଫ୍ୟାକ୍ଟ୍ରି ସଂଭାଳିବ କିଏ ?'

ଭବିଷ୍ୟତରେ ପୁଅ ଜଣେ ବିଖ୍ୟାତ ଶିଳ୍ପପତି ହେବ, ଭରଦ୍ୱାଜ କେବେ କେବେ ତାଙ୍କର ଏଇ ଇଚ୍ଛା ପ୍ରକାଶ କରିଛନ୍ତି ଗାୟତ୍ରୀଙ୍କ ପାଖରେ । ନୂଆ ନୂଆ କଲେଜ ଯାଉଥିବା ପ୍ରଭାତଙ୍କ କାନରେ ପଡିଛି ଏକଥା ।

ଏହି ଉତ୍ତର ଶୁଣି ଭରଦ୍ୱାଜଙ୍କ ଆଖି ଉଜ୍ଜ୍ୱଳ ହୋଇଉଠେ । ସେ ପଚାରନ୍ତି,

'ସତ କହୁଛୁ, ପ୍ରଭୁ ?'

'ତୁମେ ନିଶ୍ଚିନ୍ତ ରୁହ, ବାପା ? ଖୁବ୍ ପଢ଼ିବି । ଲଣ୍ଡନ୍, ଆମେରିକା ଯିବି, ପଠେଇବ ଯଦି । ତୁମେ ଯାହା ଚାହୁଁଛ ଦେଖିବ, ଦିନେ ନିଶ୍ଚୟ ବିଖ୍ୟାତ ଶିଳ୍ପପତି ହେବି ମୁଁ । ଅବଶ୍ୟ ଏସବୁ ସାଙ୍ଗରେ ଫଟୋ ଷ୍ଟୁଡିଓ ଖୋଲି ଆଦୌ ବସିବି ନାହିଁ । ତେବେ ଭଲ କ୍ୟାମେରା ରଖି ଫଟୋ ଉଠାଇବି ନିଶ୍ଚୟ । ମୁଁ ଜାଣେ ମୋ ବାପା କେବେ ମନା କରିବେ ନାହିଁ ।'

'ଏଇ ଶୁଣୁଛ ? କ'ଣ ଭାବୁଛ ବସି ?' ଶ୍ୱେତପଦ୍ମାଙ୍କ ଡାକରେ ପ୍ରଭାତଙ୍କର କୈଶୋରର ସ୍ମୃତି ଅକସ୍ମାତ୍ ଅପସରି ଯାଏ ।

'ତୁମ କାମ ସରିଲା ?'

'ପୂଜା ଶେଷକରି ଆସିଲି । ଏବେ ଲୋପା ରାକ୍ଷୀ ବାନ୍ଧିବ ତା' ଭାଇନାର ହାତରେ । ଆରେ ଅରୁଣ, କାହିଁକି ଦୌଡାଦୌଡି କରୁଛୁ କହତ ? ଲୋପା ପଡିଯିବ ।'

ପ୍ରଭାତଙ୍କର ଭିଡିଓ କ୍ୟାମେରା ତା' କାମ କରୁଛି । ମଂଜୁଳା ପିଲା ଦୁହିଁଙ୍କୁ ଧରି ଆଣିଲେ ।

'ଅରୁ, ହାତ ଦେଖା ।'ଲୋପା କ'ଣ କହୁଛି ଶୁଣୁନୁ ?'

ଲୋପା ଡାକୁଛି ଶୁଣି ଶାନ୍ତ ପିଲା ଭଳି ଅରୁଣ ଆସି ବସିଲା ଠାକୁର ଘରେ, ଆସନରେ । ଶ୍ୱେତପଦ୍ମା ଲୋପାକୁ କୋଳରେ ଧରି ବସିଥାଏ । ମଂଜୁଳା ଅନ୍ୟାନ୍ୟ କାର୍ଯ୍ୟରେ ସାହାଯ୍ୟ କରୁଥାଏ । ଲୋପା ଅରୁଣ ହାତରେ ରାକ୍ଷୀ ବାନ୍ଧିଲା । ଅରୁଣ

ମୁଣ୍ଡରେ ଚନ୍ଦନ ଟୋପା, ବେକରେ ଲୋପା ପିନ୍ଧେଇବା ଫୁଲହାର । ଭାଇକୁ ମିଠା ଖୁଆଇ ଦେଲା ଲୋପା ।

'ଲୋପା, ତୁ ଗିଫ୍ଟ ନେବୁ ?'

'ଦେ ... ଦେ,' ଦୁଇ ହାତରେ ଛୋଟ ପାପୁଲି ଦେଖେଇ ମାଗୁଥାଏ ଦେଢ଼ ବର୍ଷର ଶିଶୁ ଲୋପା ।

'ଏଥିରେ କ'ଣ ଅଛି କହତ ?'

ଅରୁଣର ପ୍ରଶ୍ନରେ ବୋକାଙ୍କ ଭଳି ହସିବା ବ୍ୟତୀତ ଲୋପା କ'ଣ କହିବ ବୁଝି ପାରୁନଥାଏ ।

ଶ୍ୱେତପଦ୍ମା, ମଂଜୁଳା ପିଲା ଦୁହିଁଙ୍କର କାର୍ଯ୍ୟକଳାପ ଉପଭୋଗ କରୁଥାଆନ୍ତି ।

ଅରୁଣ ଲୋପାକୁ ଦେଇଥିବା ଗିଫ୍ଟ ପ୍ୟାକେଟ୍‌ମାନ ଖୋଲା ହେଲା । ଲୋପା ପାଇଁ ଖେଳନା ଦୋକାନର ସୁନ୍ଦର କଣ୍ଢେଇମାନ ଉଠି ଆସିଥିଲା ଏବଂ ଅନ୍ୟ କିଛି ପ୍ୟାକେଟ୍‌ରେ ନୂଆ ସୁନ୍ଦର ଫ୍ରକ୍, ପ୍ୟାଣ୍ଟ୍ କେତୋଟି ।

ସମସ୍ତଙ୍କ ହାତତାଳିରେ ହସୁଥାଏ ଲୋପା । ହଠାତ୍ କ'ଣ କରିବ ବୁଝି ନ ପାରି ସମସ୍ତଙ୍କୁ ଚାହିଁ ଶ୍ୱେତପଦ୍ମାର କୋଳରେ ମୁହଁ ଲୁଚେଇଲା ଲୋପା ।

ପ୍ରଭାତଙ୍କର କେତେଜଣ ଭଉଣୀ, ସେମାନଙ୍କର ସ୍ୱାମୀ ପିଲାମାନେ ଆସି ପହଞ୍ଚି. ସେଇଠି ଗହଳି ଆରମ୍ଭ କରିଛନ୍ତି ।

ପ୍ରଭାତ ତ କ୍ୟାମେରାମ୍ୟାନ୍ । ଅନ୍ୟ କୋଉଆଡେ ଲକ୍ଷ୍ୟ ନାହିଁ ତାଙ୍କର । ଶ୍ୱେତପଦ୍ମାର ସତେଜ ମୁଖମଣ୍ଡଳଟି ଆନନ୍ଦରେ ଝଲସି ଉଠୁଥାଏ । କେତେଥର ସାନ ନଣନ୍ଦ କହିଦେଇ ଗଲେଣି,

'ନୂଆବୋଉ, ତୁମେ ଆଜି ଖୁବ୍ ସୁନ୍ଦର ଦିଶୁଛ ।'

'ହଁ ମ, ଦେଖୁନ ଭାଇନା ତ ମନଭରି ତାଙ୍କରି ଆଡେ କ୍ୟାମେରା ଘୁରଉଛି ।'

ହୋହଲ୍ଲା ହସ ଖୁସି, ଭଣଜା, ଭାଣିଜୀଙ୍କର ମ୍ୟୁଜିକ୍, ଡ୍ୟାନ୍ସ ! ଘରଟି ଉତ୍ସବ ମୁଖରିତ ।

ସେପାଖରେ ରୋଷେଇଘରେ ଭୋଜିଭାତର ବନ୍ଦୋବସ୍ତ । ସେ ବାସ୍ନା ଯେମିତି ଉତ୍ସବକୁ ଅଧିକ ତ୍ୱରାନ୍ୱିତ କରୁଥିଲା ।

'ସମସ୍ତେ ଏକାଠି ହେଲେ, ଖୁବ୍ ଭଲ ଲାଗେ । ଏମିତି ତ ଦେଖା ହଉନି ପ୍ରାୟ ।'

'ହଁ, ଇଚ୍ଛାକଲେ ବି ଯାଇହଉ ନାହିଁ, ନାନୀ । ସେଇ ଫୋନ୍‌ରେ ଯାହା ।' ପ୍ରଭାତଙ୍କର ଭଉଣୀ ଦୁଇଜଣ କଥାବାର୍ତ୍ତା କରୁଥିଲେ ।

ଏଘରେ ବିତିଛି ବାଲ୍ୟକାଳ । ବିବାହ ପୂର୍ବର ସେଇ ଚିନ୍ତାଶୂନ୍ୟ ଦାୟିତ୍ୱ ନ ଥିବା ଫାଙ୍କା ଜୀବନ ଏବେ ସ୍ୱପ୍ନ । ତଥାପି ଖୋଲା ମନରେ ହସୁଛନ୍ତି ଝିଅମାନେ । ଏ ମୁହୂର୍ତ୍ତମାନଙ୍କୁ ହାତ ମୁଠାରେ ସାଇତି ରଖି ହୁଅନ୍ତା ନାହିଁ ? କେହି ଜଣେ ମତ ଦେଲା ।

'ତୁ ଏମିତି କବିତା ଲେଖୁଛୁ କାହିଁକି ? ଘରକୁ ଫେରିଲେ ତ ହଜାରେ ଝଂଝାଳ ।' ନବନୀତା ଗମ୍ଭୀର ଭାବରେ କହିଲା ।

'ଥାଉ, ଥାଉ ନାନୀ, ତୋ ହସର ଦାମ୍‌ଟା ଖୁବ୍ ବେଶୀ ନା ?' ନୂପୁରର କଥାରେ ନିଜେ ନବନୀତା ଓ ଅନ୍ୟମାନେ ହସି ପକାଇଲେ ।

'ବୁଝିଲ, ଗତବର୍ଷ ଭାଇନା ତା' ଜନ୍ମ ଦିନରେ ନୂଆବୋଉକୁ ନେଇ ଦେଶ ବାହାରକୁ ପଳେଇଲା । ଏ ବର୍ଷ କିନ୍ତୁ ଛାଡିବା ନାହିଁ ।'

'ତୁମ ସମସ୍ତଙ୍କୁ ମୁଁ ନିମନ୍ତ୍ରଣ କରି ଦେଉଛି ଭାଇନା, ନୂଆବୋଉଙ୍କ ତରଫରୁ ।'

ହସି ହସି ନୂପୁର କଥାରେ ଉତ୍ତର ଦେଲା ଲାଲିମା ।

'ନିଶ୍ଚୟ ଗୋଟାଏ ଶାନ୍‌ଦାର୍ ପାର୍ଟି ଦେବ । ବ୍ୟସ୍ତ ହୁଅ ନାହିଁ ।' ପୁଅମାନଙ୍କ ଭିତରୁ କେହି ଜଣେ ମନ୍ତବ୍ୟ ଦେଲା ।

ଗାୟତ୍ରୀଙ୍କୁ ହୁଇଲ୍ ଚେୟାରରୁ ଆଣି ଅନ୍ୟ ଏକ ଚେୟାରରେ ବସେଇ ଦେଇଛି ଇନ୍ଦୁ । ସେ ସବୁ ଦେଖୁଛନ୍ତି, ମନରେ ଆନନ୍ଦ ଅଛି କିମ୍ବା ସେ ଅଶାନ୍ତ, ଅସ୍ଥିର ତା' ଜାଣିବା ମୁସ୍କିଲ । ସେଠାରେ ତାଙ୍କଆଡେ ଦୃଷ୍ଟି ଦେବାକୁ ଏମାନଙ୍କର ସମୟ ଥିବା ଭଳି ମନେ ହେଉନଥିଲା ।

ସେମାନେ ସମସ୍ତେ ପହଞ୍ଚିବା ପରେ ପରେ ଗାୟତ୍ରୀଙ୍କ ପାଖକୁ ଯାଇ ଦେଖାକରି ଆସିଥିଲେ । ଏବେ ଘରକୁ ଫେରିବାର ସମୟ ଆସିବାରୁ ବିଦାୟ ନେବାକୁ ଯାଉଥିଲେ ଝିଅମାନେ । ଝିଅ, ଜ୍ୱାଇଁମାନେ କେହି କେହି ପାଖରେ ବସି ଅଳ୍ପ ସମୟ କଥାବାର୍ତ୍ତା କରି ଚାଲିଯାଉଥିଲେ ।

'ଆଲୋ ବୋଉ, ଆମେ ଯାଉଛୁ । ପୁଣି କେବେ ସୁବିଧା ହେଲେ ଆସିବୁ ।'

'ହଁ ମା', ଆସିବ । ଯାହା ତୁମ ଇଚ୍ଛା ।'

'ତୁ ବୋଉ ବ୍ୟସ୍ତ ହଉଛୁ କାହିଁକି ?' ନୂପୁର ଧୀରେ ପଚାରିଲା ।

'ଅନେକ କଥା ଭଲ ଲାଗୁନାହିଁ ତ ।' ଗାୟତ୍ରୀ ଚିନ୍ତିତ ସ୍ୱରରେ କହିଲେ ।

'ଭଲ ଲାଗୁନାହିଁ !' ନୂପୁର ବ୍ୟସ୍ତ ହୋଇ ପଚାରିଲା, 'ଏଇ ଆମେସବୁ ଆସି ଗହଳି କରିବା ।'

'ଧେତ୍, ବୋଉକୁ ତା' ମନ କଥା କହିବାକୁ ଦେ ।' ନବନୀତା ଧୀରେ ବାଧାଦେଲା ନୂପୁରକୁ ।

'ତୁମେ ତ ଘର ଝିଅ । ସେ କଥା ମୁଁ କହୁନାହିଁ, ନିଜ ପିଲାଙ୍କୁ ମୁଁ ପର ଭାବିବି କାହିଁକି ?

ସେମାନେ କ'ଣ ଭାବୁଛନ୍ତି ? ମୁଁ ଜ୍ଞାନ ହଜଇ ଦେଲିଣି ?'

'କିଏ କ'ଣ ଭାବୁଛି ? କାହା କଥା କହୁଛୁ, ବୋଉ ?'

'କ'ଣ ହେଲା, କହ । ହେଇ ମୁଁ ବସୁଛି ତୋ ପାଖରେ ।'

'ଦେଖ, ସେ ମଂଜୁଳା କିଏ ? ତା' ସାଙ୍ଗରେ ଆମର କି ସଂପର୍କ ? ତା' ଝିଅ ପାଇଁ ସବୁଦିନେ ଆମର ଏତେ ଶ୍ରଦ୍ଧା, ଖର୍ଚ୍ଚବାର୍ଚ୍ଚ ଲାଗି ରହିଛି । ଆଉ କ'ଣ କେହି ପିଲା ନାହାଁନ୍ତି ?'

'ମଂଜୁନାନୀ ନୂଆବୋଉଙ୍କର ପିଲାଦିନର ସାଙ୍ଗ ।'

'ସେଇଥିପାଇଁ ମୁଠା ମୁଠା ଟଙ୍କା ଖର୍ଚ୍ଚ କରୁଛି ବୋହୂ ? କମ୍ ଜିନିଷ କିଣୁଛି ? ସବୁବେଳେ ଗାଡି ଧରି ଧାଇଁ ଯାଉଛି, ସକାଳୁ ସଂଜ ଯାଏ ରହିଯାଉଛି । ପଚାରିଲେ କଥା ବାଁରେଇ ଦିଏ ।'

'ତୁ ତେବେ କାହିଁକି ପଚାରୁଛୁ ଯେ ?'

'ଆଜି ଦୁହେଁ ଦେଖୁଛ ? ଏବେ ପୁଅ ଆଣିଥିଲା, ସୁନାଚେନ୍‌ରେ ହୀରାର ଲକେଟ୍ । ମୋତେ କେହି ସେମାନେ କହନ୍ତି ନାହିଁ, ଦେଖାନ୍ତି ନାହିଁ, ଘରକୁ କେତେ ଜିନିଷ ଆସେ । ମୋତେ କିଏ ପଚାରେ ? ଇନ୍ଦୁକୁ ପଚାରିଲେ ସେ ଯାହା କହେ,

ବୋହୂ ନିଜ ବେକରୁ ହାରଟା ଖୋଲି ଅରୁକୁ ଦେଲା । ନାତି ମୋର ପିଲାଟାଏ । ତା'ର କି ବୁଦ୍ଧି ? ସେହି ହୀରା ହାରଟା ନେଇ ମଂଜୁଳାର ଝିଅକୁ ପିନ୍ଧେଇ ଦେଲା । ବୋହୂ କହୁଥାଏ, ମଂଜୁ, ଲୋପାର ଗିଫ୍ଟ ସବୁ ସଂଭାଳି କରି ରଖ୍ ।

ବାହାର ପିଲାଟା ପାଇଁ ଏମିତି ଦରଦ ! ଏ ଘରୁ ଲକ୍ଷ୍ମୀ ଛାଡିଯିବ ଲୋ ମା' !'

କଥା ଅଧା ରହିଗଲା । ନବନୀତା ମଝିରୁ କହି ପକାଇଲା,

'ବୋଉ ମ, ତୁ ଏବେ ଠାକୁରଙ୍କ ନାମ ନେ । ଯାହା ଯେଉଁଠି ହେଉ କେଉଁଥିରେ ମୁଣ୍ଡ ଖେଳନା । ଏସବୁ ଅସାର କଥା । ଭାଇନା ନୂଆବୋଉଙ୍କୁ ଯାହା ଭଲ ଲାଗୁଛି ସେ କରନ୍ତୁ । ତୁ କାହିଁକି ବ୍ୟସ୍ତ ?'

'ନାନୀ ଯାହା କହୁଛି ଠିକ୍ । ଆମେ ତୋର ସାତ ସା୍ଡଟା ଝିଅ । ତାଙ୍କର ତ ସେଇ ଗୋଟିଏ ପୁଅ, ଝିଅଟିଏ ବି ହେଲା ନାହିଁ, ସାଙ୍ଗର ଝିଅକୁ ଯଦି ଗେହ୍ଲା କରି ଖୁସୀ ହଉଛନ୍ତି ହୁଅନ୍ତୁ ।'

ନୂପୁରର କଥା ଦି'ପଦ ତାଙ୍କ ଦେହ ଥରାଇ ଦେଲା । ସେ ଯେପରି କାହାର କଥା ଶୁଣିପାରୁ ନ ଥିଲେ । ସେମାନେ ସମସ୍ତେ ଚାଲିଗଲେଣି । ତଥାପି ମନକୁ ମନ କହିହେଉଥିଲେ ଗାୟତ୍ରୀ । ମୋରି ଭଳି ଝିଅ ପଂଝାଏ ଜନ୍ମ କରି କଷ୍ଟ ନ ପାଆନ୍ତୁ, ଏଇଆ ତ ମୁଁ ଚାହିଁଥିଲି । ଆଉ ଏଇଥିପାଇଁ କମ୍ ଶାସ୍ତି ମୁଁ ପାଇଲିଣି ? ସେମାନେ କେହି ମୋତେ ଆଡ ଆଖିରେ ଚାହୁଁ ନାହାଁନ୍ତି ।

ସେ ପାଖ ଦେଇ ଯିବାବେଳେ ଶାଶୂଙ୍କ ସହ ନଣନ୍ଦମାନଙ୍କର ଆଳାପ, ଶାଶୂଙ୍କର ସ୍ୱଗତୋକ୍ତି ଶ୍ୱେତପଦ୍ମା ଶୁଣିଥିଲା । ଏସବୁ ନେଇ କାହାକୁ କିଛି କହିବାର ନ ଥିଲା ତା'ର । ସେଦିନର କାର୍ଯ୍ୟବ୍ୟସ୍ତତା ମଧ୍ୟରେ ଏସବୁ ଚିନ୍ତା କରିବାକୁ ସମୟ ପାଇନଥିଲା ଶ୍ୱେତପଦ୍ମା ।

ଗାୟତ୍ରୀଙ୍କ ଶକ୍ତି ଥିଲେ ଏ ଘର ଭାଙ୍ଗି ଦିଅନ୍ତେ । ଚିତ୍କାର କରି କହନ୍ତେ, ମୋ ବିନା ଅନୁମତିରେ ଗଛରୁ ପତ୍ର ଝଡିବ ନାହିଁ ଏଠି । ସାହସ ତ କମ୍ ନୁହେଁ । ମୋତେ ଆଡେଇ ଦେଇ ବେଶ୍ ତ ଯଥେଚ୍ଛାଚାର କରି ଚାଲିଛ ? ତୁମେ ସବୁ ନିଜକୁ କ'ଣ ବୋଲି ଭାବୁଛ ?

ନା - ସେ ଦିନ କିନ୍ତୁ ଚାଲିଯାଇଛି । ଆହତ ସାପର ବିଷ ଦାନ୍ତ ଝଡିଗଲେ ଫଁ ଫଁ ହେବା ବ୍ୟତୀତ ସେ ଆଉ କ'ଣ କ୍ଷତି କରିପାରିବ କାହାର ?

ତାଙ୍କ ପାଇଁ ଯେତିକି କର୍ତ୍ତବ୍ୟ ପାଳନ କରୁଛି ତା' ଅପେକ୍ଷା ଅଧିକ କରିପାରିବନି ଶ୍ୱେତପଦ୍ମା । ଏତେ ସବୁ ପରେ ତଥାପି-

ପରେ ଏସବୁ ଚିନ୍ତା କଲେ କେତେ କଥା ମନକୁ ଆସେ । ନିଜକୁ ଦୟା କରେ ସେ । ଏକାନ୍ତରେ ନିଜ ମନକୁ ସାନ୍ତ୍ୱନା ଦେଇ ବୁଝାଏ - ଆହା, ସମସ୍ତେ ଥାଇ କେହି ବି ତୋର ନୁହଁନ୍ତି । ସତରେ ତୁ ଖୁବ୍ ଏକା । ନିଜ ପାଇଁ ନିଜେ ଚିନ୍ତା ନ କଲେ ହାରିଯିବୁ, ଶ୍ୱେତା ।

ଶ୍ୱେତପଦ୍ମାର ଆଖି ଉଜ୍ଜ୍ୱଳ ହୁଏ, ଦେହ ମନର ସବୁ ଶକ୍ତି ଏକାଠି କରି ସେ ଧାଇଁ ଯାଏ ଫୋନ୍ ପାଖକୁ ।

ମଂଜୁଳା ଘରେ ଫୋନ୍ ରିଂ ହୁଏ । ସେ ପାଖରେ କିଏ ଫୋନ୍ ଉଠାଏ ? ଶ୍ୱେତାର ଓଠ ପାଙ୍କରେ ସରୁ ହସର ରେଖା କେତୋଟି । ମୁହଁ ତା'ର ଉଜ୍ଜ୍ୱଳ ହୋଇଉଠେ । ଏଣେ ଅରୁଣର ସ୍ୱର ଶୁଣାଯାଏ । ବୋଉ ମୋ ଟିଫିନ୍ ବକ୍ସ ଦେ । ପ୍ରଭାତଙ୍କର ଅଭିଯୋଗ, 'ପୂଜାରୀ ଆଜି କ'ଣ ଏମିତି ଚା' କରିଛି ? ସକାଳର ଚା'ଟା ପ୍ଲିଜ୍ ତୁମେ କର, ଶ୍ୱେତା ।'

ଶ୍ୱେତପଦ୍ମା ହସେ । ତା'ର ତ ପରିପୂର୍ଣ୍ଣ ସଂସାର । ଜୀବନର ସମସ୍ତ ସୁଖ, ଶାନ୍ତି ସେଇ ମୁହୂର୍ତ୍ତରେ ଆଚ୍ଛନ୍ନ କରେ ତାକୁ ।

- ଆଣ୍ଟି, ଆଣ୍ଟି ।

- କିଏ ରେ ମା' ?

ଘର ଭିତରକୁ ଅକସ୍ମାତ୍ ପଶି ଆସିଛି କି କିଛି କୋମଳ, ସୁଗନ୍ଧିତ ମଳୟ

ପବନ । ଠାକୁର ଘରେ ପୂଜା ପ୍ରାର୍ଥନା ଶେଷ କରି କିଛି ଫୁଲ ଠାକୁରଙ୍କ ପାଦ ତଳେ ରଖି, ପ୍ରଣତି ଜଣାଇ ଫେରି ଆସୁଥିଲା ଶ୍ୱେତପଦ୍ମା । ସତେକି ଅଭିଶପ୍ତ ସନ୍ନ୍ୟାସିନୀଟିଏ, ମୂର୍ତ୍ତି ପାଲଟିଛି । ଖୋଲା ଦେହରେ ନାଲି ଧଡିର ଈଷତ୍ କମଳା ରଙ୍ଗର ଶାଢ଼ିଟି । କପାଳରେ ଉଜ୍ଜ୍ୱଳ ସିନ୍ଦୂର ଟୋପା । କଜଳ କଳା ବଡ ବଡ ଆଖି ଦୁଇଟି ଆଶ୍ଚର୍ଯ୍ୟ ଆନନ୍ଦରେ ଝଲମଲ୍ କରୁଥାଏ ।

ସାନ ଝିଅଟିକୁ କୋଳେଇ ନେଇ ବକ୍ଷସଂଲଗ୍ନା କରିବାକୁ ଅଦମ୍ୟ ଇଚ୍ଛା । ଅଥଚ କାହିଁକି ଯେ ସେ ତା' ପାରୁନଥିଲା, ନିଜକୁ ବାରମ୍ବାର ଏହି ପ୍ରଶ୍ନ ପଚାରୁଥିଲା ଶ୍ୱେତପଦ୍ମା । ଅନ୍ତର ମଧରୁ ଉଚ୍ଛୁଳା ସ୍ନେହକୁ ତଥାପି ନିଜ ଅକ୍ତିୟାରରେ ରଖିବାରେ ସମର୍ଥ ହୋଇଥିଲା ଶ୍ୱେତପଦ୍ମା ।

ସାନ ପରୀଟି କିନ୍ତୁ ମୁଗ୍ଧ ଦୃଷ୍ଟିରେ ଚାହିଁ ରହିଥିଲା ସେଇ ଶାପଗ୍ରସ୍ତା ସନ୍ନ୍ୟାସିନୀକୁ । ହୁଏତ ମନେ ମନେ ଭାବୁଥାଏ - ମୋ ଶ୍ୱେତା ଆଣ୍ଟି କେତେ ଭଲ ।

ଏଥର ଦୁହେଁ ଯେପରି ପ୍ରକୃତିସ୍ଥ ହୋଇ ଉଠିଲେ । ଶ୍ୱେତା ପଚାରିଲା, 'ତୁ ବମ୍ବେରୁ କେବେ ଫେରିଲୁ, ଲୋପା ?'

'ମୁଁ ତ ତିନି ଚାରିଦିନ ହେବ ଫେରିଲିଣି । ଜାଣି ଜାଣି ତୁମକୁ ଫୋନ୍ କରି ନ ଥିଲି । ଭାବିଲି, ଏକାଠି ସରପ୍ରାଇଜ୍ କରି ଦେବି ।'

ଶ୍ୱେତା ହସୁଥାଏ । ଦଶ, ଏଗାର ବର୍ଷର ସାନ ଝିଅଟାର କେତେ ବୁଦ୍ଧି । ସେ ବମ୍ବେ ଯିବା ପାଇଁ ବାହାରିବା ସମୟରେ ଶ୍ୱେତା ମନର ଯେଉଁ ଅସ୍ଥିରତା, ସେ କାହା ପାଖରେ ପ୍ରକାଶ କରି ପାରୁ ନ ଥିଲା । ମଂଜୁ କହେ, 'ମୁଁ ଦେଖୁଛି କ'ଣ କିମିତି ହବ; ଆଉ କିଏ ଯାଉଛନ୍ତି । ତୁ ଶ୍ୱେତା, ଏତେ ଚିନ୍ତା କରନା ।'

ସତ କଥା । କାହିଁକି ବା ଲୋପାକୁ ନେଇ ତା'ର ଏତେ ବ୍ୟସ୍ତତା ? ସେ ତ ମଂଜୁର ଝିଅ । ମଂଜୁ ବୁଝିବ ।

ଶ୍ୱେତାର ଆଖି ସଜଳ ହେଲା । ଲୁଗାକାନିରେ ଆଖି ପୋଛି ହସିଲା ସେ ।

'ଏବେ କିମିତି ଆସିଲୁ ?' ନିଜକୁ ସହଜ କରିନେଇ ପଚାରିଲା ଶ୍ୱେତପଦ୍ମା ।

'ମା'ର ମିନିଷ୍ଟରଙ୍କୁ ଦେଖା କରିବାର ଥିଲା ତ । ପରେ ପରେ ମିଟିଂ ଅଛି

କହୁଥିଲା । ସନ୍ଧ୍ୟାରେ ଫେରିବ । ମୋତେ ଛାଡି ଦେଇ ସେ ତରତରରେ ଚାଲିଗଲା । ଆଣ୍ଟି ଦେଖ, ତୁମ ପାଇଁ କ'ଣ ଆଣିଛି ।'

'ମୋ ପାଇଁ ? ମୋ ପାଇଁ ଆଣିଛୁ ! ଆ ମା' ଏଠି ବସିବା ଆମେ ।'

ଶ୍ୱେତପଦ୍ମା ଖୁସିରେ କୋଳେଇ ନେଲା ଲୋପାକୁ । ସଂସାର ଯାକର କେତେ କଥା, ମନର ସମସ୍ତ ଅସ୍ଥିରତା ଲିଭିଯାଇ ସେ ନିଶ୍ଚିନ୍ତ ହୋଇଯାଇଥିଲା ସେତେବେଳେ ।

କଣ୍ଢେଇ କଥା କହୁଛି । କହୁ, ଶ୍ୱେତାର ଶୁଣିବାର ଆଗ୍ରହ କିଛି କମ୍ ନୁହେଁ ।

'ଆଣ୍ଟି, ଜାଣିଛ ମୋର ଜଣେ ସାଙ୍ଗ ଲଣ୍ଡନ୍ ଯାଇଥିଲା । ଯିବାବେଳେ ପଚାରିଲା, 'ତୋ ପାଇଁ କ'ଣ ଆଣିବି ?' ମୁଁ କହିଲି, 'ଚା' । ମୋର ବେଷ୍ଟ୍ ଚା' ଦରକାର । ସେ କାଳେ ଭୁଲିଯିବ ସେଥିପାଇଁ ଚା'ର ନା ଲେଖି ତାକୁ ନେଇଥିଲି ।' କହିଥିଲି ମୋ ଆଣ୍ଟିଙ୍କର ପସନ୍ଦ ଏଇ ଚା', ବୁଝିଲୁ ତ । ତୁମେ ଏଇ ଚା' ଖୁବ୍ ଭଲ ପାଅ ନା ? ଆରେ ଚାହିଁଚ କ'ଣ ? ତୁମ ଆଖି ଏମିତି କାହିଁକି ଦେଖା ଯାଉଛି ?'

'ନାରେ ଧନ, ତୋ କଥା ତ କିଛି କହିଲୁ ନାହିଁ ?'

'କହିବି ଆଣ୍ଟି । ଅନେକ କଥା ତୁମକୁ କହିବାର ଅଛି । ଟିକିଏ ରୁହ । ଇନ୍ଦୁ ମାଉସୀ, ଇନ୍ଦୁ ମାଉସୀ, ମୋର ଗୋଟିଏ କପ୍ ଗରମ ପାଣି ଦରକାର । ସାନ ଟି'ପଟ୍ ଗରମ ପାଣିରେ ଧୋଇ ରଖ, ମୁଁ ଯାଉଛି ।

ଆଣ୍ଟି କୁଆଡେ ଉଠୁଛ । ନା ନା, ତୁମେ ଯାଇପାରିବ ନାହିଁ । ଏଇଠି ବସ । ଦେଖ, ମୁଁ ଏବେ କିଛି ଖାଇବିନି । ଭାଇନା ଆସୁ । ଯାହା ଖାଇବାକୁ ଦବ ଖାଇବି । ଆମେ ଏକାଠି ଖାଇବୁ ।'

ଭାଇ, ଭଉଣୀଙ୍କର ଏକାଠି ଖେଳ, ପାଠପଢ଼ା, ଖାଇବା ଦେଖିଲେ ମନ ପୂରିଯାଏ । କିଏ କହେ ଲୋପା ମଂଜୁର ଝିଅ ? ସେ ଆସିଲେ ଏ ଘର ଗହଳି ହୋଇଉଠେ । ଶାଶୂଙ୍କର ସେତେବେଳେ ଅସନ୍ତୁଷ୍ଟ କଥା କେତେ ପଦ ଶୁଣି ନ ଶୁଣିଲା ଭଳି ରହିଯାଏ ଶ୍ୱେତପଦ୍ମା ।

କିଏ ପିନ୍ଧିବ ତା'ର ଏତେସବୁ ଦାମି ଦାମି ଶାଢ଼ି, ସୁନା, ହୀରା, ବହୁ ମଣିମାଣିକ୍ୟର ଗହଣାମାନ ? କାହାପାଇଁ ସେ ସାଇତି ରଖିବ ? କାହିଁକି ପ୍ରଭାତ ଦେଶ, ବିଦେଶରୁ ନେଇ ଆସନ୍ତି ସପ୍ତାଶ୍ଚର୍ଯ୍ୟ ଭଳି ସୁନ୍ଦର ଜିନିଷମାନ । ଦିନସାରା ଅକ୍ଳାନ୍ତ ପରିଶ୍ରମ ପରେ ରାତିରେ ଏକାନ୍ତରେ ପଚାରନ୍ତି, 'ଶ୍ୱେତା, ଏତେ ସୁନ୍ଦର

ପଦାର୍ଥମାନ, ତୁମ ପାଇଁ ଶାଢ଼ି, ଆଧୁନିକ ପୋଷାକ, ଫେସନ୍ ଜୁଏଲାରୀ, ଦୁଷ୍ପ୍ରାପ୍ୟ ବହି ମାନ ଖୋଜି ଖୋଜି ଆଣିଲି । ଥରେ ବି ଖୁସୀ ହେଇପାରୁନ ।'

ଶ୍ୱେତା ସତରେ ହସିଦିଏ । ମେଘାଛନ୍ନ ଆକାଶରେ ଥରକ ପାଇଁ ସୂର୍ଯ୍ୟ ମୁହଁ ଦେଖାଇବା ଭଳି ସେ ହସ । କହେ, 'ଭଲ ତ ହୋଇଛି । ତୁମକୁ ଧନ୍ୟବାଦ ଦେବି ନା କ'ଣ ?'

ପ୍ରଭାତ ଶ୍ୱେତପଦ୍ମାକୁ ଚାହିଁ ରହନ୍ତି ଅନେକ ସମୟ । କ'ଣ ଭାବନ୍ତି କେଜାଣି ?

- ଗରମ ଗରମ ଚା' ।

ସ୍ୱପ୍ନରୁ ଉଠିବା ଭଳି ଚମକି ପଡିଲା ଶ୍ୱେତପଦ୍ମା ।

ହାତରେ ସୁଦୃଶ୍ୟ ଟ୍ରେରେ ଚା' କପ୍, କିଛି ବିସ୍କୁଟ୍ ସଜେଇ ନିଜେ ନେଇ ଆସୁଛି ଲୋପା ।

- ଇଏ କ'ଣ ମା', ମୋ ପାଇଁ ଚା' କରିବାକୁ ଗଲୁ ତୁ ।

- ଆଣ୍ଟି, କି ଫ୍ଲେବର୍ ଦେଖ ତ । ତୁମର ପସନ୍ଦ ହେଉଛି କି ନାହିଁ କୁହ । ନା - ବିସ୍କୁଟ୍ ପରେ । ପ୍ରଥମେ ଏ ଚା' ଟେଷ୍ଟ କର । ମୁଁ ନିଜେ ତିଆରି କରିଛି ।

ଲୋପାକୁ ଛାତିରେ ଜାକି ଧରିଲା ଶ୍ୱେତପଦ୍ମା । ଅଶ୍ରୁ ଦୁଇ ଧାର କାନିରେ ପୋଛିଦେଇ କହିଲା, 'ଦେ ମୁଁ ଚା' ପିଉଛି । ଏଥର ତୋ କଥା ପଦେ କହ ତ ।'

- ତୁମେ ତ ଜାଣିଛ ସାଇନ୍ସ କୁଇଜ୍ ପାଇଁ ବମ୍ବେ ଯାଇଥିଲି ମୁଁ ।

ହାଏଷ୍ଟ ମାର୍କ୍ସ ରଖିଲି ।

- ସତେ ଧନ ? ତୁ ଫାଷ୍ଟ୍ ହେଲୁ ?

- ତୁମେ ଆସିଲେ କପ୍, ସିଲ୍ଡ, ସାର୍ଟିଫିକେଟ୍ ଆଉ ଯାହା ଯାହା ମିଳିଛି, ସବୁ ଦେଖିବ । ଜାଣିଛ ଆଣ୍ଟି, ଏସବୁ ତ ନ୍ୟାସ୍‌ନାଲ୍ ଲେବଲ୍‌ରେ ହେଲା । ଆମର ଆଉ ଗୋଟିଏ କଂପିଟିସନ୍ ହବ । ମୁଁ କ୍ୱାଲିଫାଏ କଲେ ବାହାରକୁ ଯାଇପାରେ ।

- ମାନେ ଫରେନ୍ ଯିବୁ ନା କ'ଣ ?

ବ୍ୟସ୍ତ ହେଇ ଉଠିଲେ ଶ୍ୱେତପଦ୍ମା । ଏତେ ଦୂର ଏକା କୁଆଡେ ଯିବ ଏଗାର, ବାର ବର୍ଷର ଝିଅ ?

- ଆଣ୍ଟି, ମୁଁ ଷ୍ଟେଟ୍‌ସ ଯିବି । ତୁମେ ଖୁସୀ ହଉନ ? ମାତ୍ର ଫିଫ୍‌ଟିନ୍ ଡେଜ୍ । ନଟ୍ ମୋର୍ ଦ୍ୟାନ୍ ଦ୍ୟାଟ୍ ।

- ଆଉ କିଏ ଯିବ ? କେବେ ଯାଉଚୁ ? ସେଠି ରହିବାର ବ୍ୟବସ୍ଥା କ'ଣ ? ମା' କ'ଣ କହୁଚି ?

ଶ୍ୱେତପଦ୍ମା ବ୍ୟସ୍ତ ହୋଇ ଅନେକ ପ୍ରଶ୍ନ ପଚାରି ବସିଲା ।

- ଦେଖ ଆଣ୍ଟି, ଆମ ଟିଚର୍‌ମାନେ ମୋତେ କହୁଛନ୍ତି, 'ଦେଖ ଲୋପା, ତୁମେ ଯେମିତି ହେଲେ ଆମ ସ୍କୁଲ୍, ଆମ ରାଜ୍ୟ ନୁହେଁ ସାରା ଦେଶର ନାଁ ରଖିବ । ସେଥିପାଇଁ ଏବେ ଠାରୁ ଲାଗିପଡ ।

କେତେ କଥା କହୁଚି ଲୋପା ? ଆଗ୍ରହୀ ଶ୍ରୋତା ଶ୍ୱେତପଦ୍ମା ।

ଖାଇବା ଟେବୁଲ୍‌ରେ ପ୍ରଭାତ ଅପେକ୍ଷା କରିଛନ୍ତି ପିଲା ଦୁହିଁଙ୍କୁ । ଲୋପାକୁ କୋଳକୁ ଟାଣିନେଇ ଅନେକ କଥା ସେ କହିବାରେ ଲାଗିଛନ୍ତି । ଲୋପା ଏବେ ହସଖୁସିରେ ଘୂରି ବୁଲୁଛି ଘରସାରା । ବଗିଚାକୁ ଦୌଡିଯାଇ ଦେଖି ଆସୁଛି ଅରୁଣ ଆସିଲା କି ନାହିଁ ।

- ସବୁଦିନ ଶୀଘ୍ର ଆସୁଥିବା ପିଲାଟା ଏତେ ଡେରି କରୁଛି ଆଜି ? ଶ୍ୱେତା, ତୁମେ ଲୋପାକୁ ଖାଇବାକୁ ଦିଅ ତ ।

- ଥାଉ, ଅଙ୍କଲ୍, ଭାଇନା ଆସୁ । ମା' ସନ୍ଧ୍ୟା ପୂର୍ବରୁ ଆସିବ ନାହିଁ । ମୁଁ ଏତେ ଶୀଘ୍ର ଘରକୁ ଯାଉନି ।

- କଂଗ୍ରାଚ୍ୟୁଲେସନ୍, ଲୋପା । ଫୋନ୍ ନାହିଁ, କିଛି ନାହିଁ । ଚୁପ୍ ହୋଇ ବସି ଯାଇଛୁ ଘରେ ।

- ଭାଇନା, ତୁ ତ ସବୁ ଖବର ଜାଣିଛୁ । ମା' ମୋ ଠାରୁ ଫୋନ୍ ପାଇ ମୁଁ ଓଡିଶାରେ ପହଞ୍ଚିବା ପୂର୍ବରୁ ସବୁ କହି ଦେଇଥିବ । ମୁଁ ଅଧିକ କ'ଣ କହିବି ?

ଲୋପା ଆଣିଥିବା ଚକୋଲେଟ୍ ତା' ହାତରୁ ଟାଣି ନେଇ ଅରୁଣ କହିଲା, 'ଥ୍ୟାଙ୍କ୍ ୟୁ, ଲୋପା ।'

- ଭାଇନା, ତୁ କ'ଣ ରଖିଛୁ ମୋ ପାଇଁ ?

- ଧେତ୍ ମୋତେ ଭୋକ ହେଲାଣି, ଆସିଲୁ ଖାଇବା । ଚାଲ୍, ଚାଲ୍ । ବାପା ଡାକୁଛନ୍ତି ।

ପିଲା ଦୁହେଁ ଦୌଡ଼ା ଦୌଡ଼ି କରି ଆସି ଖାଇବା ଟେବୁଲ ପାଖରେ ବସିଲେ । ଲୋପାର କଥା ଶେଷ ହେଉ ନାହିଁ । ଅରୁଣ ସାଙ୍ଗରେ ତା'ର କେତେ ଗପ ଥାଏ କେଜାଣି ?

ଶ୍ୱେତା ଖାଇବାକୁ ବାଢ଼ି ଦେବାବେଳେ ଏସବୁ ଭାବି ହସିଦେଲା ପ୍ରଭାତଙ୍କୁ ଚାହିଁ ।

- ଦେଖୁଚ ଭାଇନା, ମୁଁ ଯଦି ଷ୍ଟେଟସ୍ ଯାଏ ଆଣ୍ଟି ଖୁବ୍ ଚିନ୍ତାରେ ପଡିବେ ।

- ମା', ସବୁବେଳେ ତୁମେ ଏତେ ଚିନ୍ତା କର କାହିଁକି ? ତୁମେ ବୋଧହୁଏ ଜାଣିନ ? ଏସବୁ ନ୍ୟାସନାଲ୍ ଲେବଲ୍‌ର ପରୀକ୍ଷା, ଏତେ ସହଜ ନୁହେଁ । ଲୋପା ପାଇଁ ତୁମେ ବରଂ ଠାକୁରଙ୍କୁ ଡାକ  ସେ ସିଲେକ୍ଟ ହେବା ଖୁବ୍ ବଡ କଥା ।

ପ୍ରଭାତ ପିଲା ଦୁହିଁଙ୍କୁ ଉତ୍ସାହିତ କରୁଛନ୍ତି । ଅରୁଣଙ୍କୁ କହୁଛନ୍ତି,

- ବାବୁରେ, ତୁମେ ସବୁ ଏବେ ମା' ବାପାଙ୍କ କଥା ଚିନ୍ତା କରନାହିଁ । ନିଜ କର୍ତ୍ତବ୍ୟ କରିଯାଅ । ପଢ଼ାପଢ଼ିରେ ଆଦୌ ହେଳା କରିବା ଠିକ୍ ନୁହେଁ । ମୋର ତ ଆମ ଲୋପା ଉ୍‌ପରେ ଖୁବ୍ ବିଶ୍ୱାସ ।

ଆମ ଲୋପା ! ଶ୍ୱେତାର ମୁହଁର ରଙ୍ଗ ବଦଳି ଯାଉଛି । ଆବଦ୍ଧ ଅଭିମାନ ପ୍ରକାଶ ପାଇ ନ ପାରିଲେ ସେ ଏମିତି କିଛି ଭାବନା ନେଇ ନୀରବ ରହିଯାଏ ।

ପ୍ରଭାତଙ୍କ ବ୍ୟସ୍ତ ଜୀବନରେ ଏସବୁର ଛାପ ପଡେ କି ନାହିଁ, ଭାବିବାକୁ ଚେଷ୍ଟା କରେ ନାହିଁ ଶ୍ୱେତପଦ୍ମା ।

ଅରୁଣ ତାକୁ କେତେ ପ୍ରଶ୍ନ ପଚାରି ଚାଲିଛି । ସେଦିନ ଲଞ୍ଚ୍ ପରେ ସେ ସ୍କୁଲ୍ ଗଲାନାହିଁ ଲୋପାକୁ ଦେଖି ।

ସାଇନ୍ସ କୁଇଜ୍‌କୁ ଯିବା ପୂର୍ବରୁ ଏବଂ ସେଠାରେ ପହଞ୍ଚି କ'ଣ କିପରି ହେଲା, କି କି ପ୍ରଶ୍ନ ପଚାରିଥିଲେ ସେମାନେ, ଏସବୁର ବିଷଦ୍ ବିବରଣୀ ଜାଣିବାକୁ ଅରୁଣର ଆଗ୍ରହ ଶେଷ ହେଉନାହିଁ ।

ସେମାନେ ବଗିଚାକୁ ଚାଲିଗଲେଣି । ଲୋପା ହାତରେ ଅରୁଣ ନୂଆ କିଣିଥିବା ବହି ଦୁଇଖଣ୍ଡ । ପିଲାଟା ବହିକୁ ପାଖରୁ କ୍ଷଣେ ଅନ୍ତର କରେ ନାହିଁ ।

ଅନେକ ସମୟ ହେବ ବନ୍ଦ କାଚ କବାଟ ଦେଇ ବଗିଚାକୁ ଚାହିଁ ରହିଛି ଶ୍ୱେତପଦ୍ମା । ପିଲା ଦୁହିଁଙ୍କୁ ଏକାଠି ଦେଖିବାରେ  ଏହି ମହାର୍ଘ ମୁହୂର୍ତ୍ତମାନଙ୍କୁ ସତେ ଯେପରି ସେ ହାତଛଡା କରିବାକୁ ଚାହେଁ ନାହିଁ ।

ଏବେ ଅରୁଣର ପଢ଼ା ଘରେ ବସିଛନ୍ତି ଅରୁଣ, ଲୋପା । କଂପ୍ୟୁଟର୍ ପାଖରେ ବସିଛି ଅରୁଣ । ଲୋପା ପାଖ ଚଉକିରେ ଆଉଜି ବସି ବହି ପଢୁଛି । ଯାପରେ ଦୁହିଁଙ୍କର କଂପ୍ୟୁଟର୍ ଗେମ୍‌ରେ ମନ ଲାଗିଯିବ । ତା' ପରେ ଚାଲିଯିବେ ବଗିଚାକୁ । ଯିବାଯାଏ ଖେଳ ଶେଷ ହେବ ନାହିଁ । ଗପ ଚାଲିଥିବ ଲୋପା ଯିବା ପର୍ଯ୍ୟନ୍ତ ।

ମିଂକୁ ଫେରିଲା ସନ୍ଧ୍ୟା ପୂର୍ବରୁ । କ୍ଳାନ୍ତ ହୋଇ ବସିଛି ବଗିଚାରେ । ପାଖରେ ଶ୍ୱେତପଦ୍ମା । ଦୁହିଁଙ୍କର ସେଦିନ କଥାବାର୍ତ୍ତା ଯେପରି ଶେଷ ହୋଇ ଆସୁଛି । ପିଲାଙ୍କ ସହ ପିଲା ହୋଇ ଲନ୍ ଟେନିସ୍ ଖେଳୁଛନ୍ତି ପ୍ରଭାତ ।

ଖୋଲା ପବନରେ ଗାୟତ୍ରୀ ବୁଲୁଛନ୍ତି ହୁଇଲ୍ ଚେୟାର୍‌ରେ । ଇନ୍ଦୁ ତାଙ୍କୁ ବୁଲାଉଛି ସବୁଦିନ ଭଳି । ଅନ୍ୟମାନେ କେହି ତାଙ୍କ ପ୍ରତି ସଚେତନ ନୁହଁନ୍ତି । ସେ ମଧ ଇନ୍ଦୁ ସହ ପଦେ ଅଧେ କଥା କହିବା ବ୍ୟତୀତ ସେଇ ଚେୟାର୍‌ରେ ଆଉଜି ବସି ଫାଙ୍କା ଦୃଷ୍ଟିରେ ଶୂନ୍ୟ ଆକାଶକୁ ଚାହିଁ ରହିଛନ୍ତି । ହୁଏତ ତାଙ୍କ ଜୀବନର ବିତିଯାଇଥିବା ଦିନମାନଙ୍କୁ ଅନୁଧ୍ୟାନ କରିବା ବ୍ୟତୀତ ଅନ୍ୟ କିଛି ଭାବିବା ପାଇଁ ଶକ୍ତି ନ ଥିଲା ତାଙ୍କ ପାଖରେ ।

ସମୟ ଅତିକ୍ରାନ୍ତ ହେଉଛି । ବୟସ୍କମାନଙ୍କୁ ଦେଖିଲେ ପ୍ରାୟ ସେମିତି କିଛି ଖୁବ୍ ବେଶୀ ପରିବର୍ତ୍ତନ ପରିଲକ୍ଷିତ ହୁଏ ନାହିଁ । ମାତ୍ର ଶିଶୁ କିଶୋରମାନେ ଦ୍ରୁତ ବେଗରେ ଆଗେଇଯାଆନ୍ତି । ଧୀରେ ଧୀରେ ଚାଲି ଶିଖୁଥିବା ଶିଶୁଟିକୁ ମାତ୍ର କେତେ ବର୍ଷ ପରେ କୋମଳ ସୁନ୍ଦର କିଶୋରଟିଏ ରୂପରେ ଦେଖିବାକୁ ମିଳେ । ପରେ ପରେ ସମୟ ଆଗେଇ ଗଲେ ହୁଏତ ସେ ମନେହୁଏ ଜଣେ ମାର୍ଜିତ ରୁଚିର ଯୁବକ ବା ଯୁବତୀ ।

ସେଦିନର ପାଞ୍ଚବର୍ଷର ଅରୁଣ ଏବେ ସତେଇଶ ବର୍ଷର ଯୁବକ । ଆଇ.ଟି ନଗର ବାଙ୍ଗାଲୋରରେ ଏକ ବିଦେଶୀ ଫାର୍ମରେ ଜଣେ ନାମକରା ଇଂଜିନିୟର ଭାବେ ସେ ଅବସ୍ଥାପିତ ।

ଅନେକଥର ସେ ପ୍ରଭାତଙ୍କୁ କହିଛି ତାଙ୍କର ଇଣ୍ଡଷ୍ଟ୍ରୀକୁ ଖୁବ୍ ବେଶୀ ପରିବର୍ତ୍ତିତ ନ କରିବାକୁ । ପ୍ରଭାତ କହନ୍ତି, 'ବାବୁ, ନିଷ୍ଠା, ଉପଯୁକ୍ତ ପରିଚାଳନା ତଥା ସବୁ

ଦିଗରୁ ବିଚାର କରି କାର୍ଯ୍ୟ କଲେ ଶିଳ୍ପ କ୍ଷେତ୍ରରେ ଉନ୍ନତି ହେବ ନିଶ୍ଚୟ । ମାତ୍ର ଏ ରାଜ୍ୟରେ ସ୍କୋପ୍ କାହିଁ ଆମ ଇଣ୍ଡଷ୍ଟ୍ରୀକୁ ଏକ୍ସପାଣ୍ଡ୍ କରିବାର । ଠିକ୍ ଅଛି । ଠିକ୍ ଚାଲିଛି । ତୁ ବ୍ୟସ୍ତ ହେବୁ ନାହିଁ ।'

ଅରୁଣ ଅନେକ ସମୟରେ ମା' ବାପାଙ୍କ ବିଷୟରେ ଚିନ୍ତା କରେ । ଫୋନ୍‌ରେ କଥାବାର୍ତ୍ତା କରେ ମା'ଙ୍କ ସହ । ବାପାଙ୍କୁ ଇଣ୍ଟରନେଟ୍‌ରେ ମେଲ୍ ପଠାଏ । ହାତରେ ବଡ ବଡ ଚିଠି ଲେଖିବାର ଯୁଗ ଶେଷ ହୋଇଛି ପ୍ରାୟ । ତଥାପି ମନ ହୁଏ ମା'ଙ୍କୁ ଲେଖିବ । ଅନେକ ମନ କଥା ତାଙ୍କୁ କହିହୁଏ । ବାପାଙ୍କୁ ନୁହଁ । କାହିଁକି କେଜାଣି ମା'ଙ୍କ ଉଦାସ ଦୃଷ୍ଟି ଅସ୍ଥିର କରେ ଅରୁଣକୁ । ଦେଖିଲେ ମନେହୁଏ ଭାରି ହୃଦୟ ନେଇ ପଥର ମୂର୍ତ୍ତିଟିଏ ସେ ଘରେ ଯାତାୟାତ କରୁଛି କି ? ସେ ମୂର୍ତ୍ତିଟି ଖୁସୀ ଅଛି ବା ମନ ଦୁଃଖ କରୁଛି, ତା'ର ନିଜର କିଛି ଆବଶ୍ୟକତା ଅଛି ବା କାହା ପ୍ରତି ଅଭିଯୋଗ ଅଛି, ତା' ଜାଣିବା ମୁସ୍କିଲ୍ ।

ଅରୁଣ ନିଜକୁ କହେ, 'ଆରେ ଗଧ, ତୋର କିଛି କାମ ନାହିଁ ଏବେ । ମା' ତ ତାଙ୍କ ଖୁସିରେ ଅଛନ୍ତି । ବାପା ମା'ଙ୍କୁ ଖୁସିରେ ରଖିବା ପାଇଁ ସବୁ ସୁଖ ଖଂଜି ଦେଇଛନ୍ତି । ମା'ଙ୍କ ମନ ଊଣା ଥିଲେ ବାପା ଏତେ ଖୁସୀ ରହିପାରନ୍ତେ ? ଧେତ୍, ଏଇ ତୋର ଶିକ୍ଷା ! ଧିକ୍ ତୋର ବିଚାର । ମା' ଖୁସୀ ନୁହଁନ୍ତି ଭାବିବା ହିଁ ତୋର ଭୁଲ । କି ସୁନ୍ଦର ତାଙ୍କ ଠାକୁର ଘର ? ଆମ ବଗିଚାରେ ଯାହା ଫୁଲ, ଫଳ, ପରିବା ତା' ତ ବାଙ୍ଗାଲୋର ଭଳି ଉଦ୍ୟାନ ସହରରେ ବି କାହାଘରେ ଦେଖିବାକୁ ମିଳିବ ନାହିଁ । ଅବଶ୍ୟ ମାନୁଛି ଘର ସହ ବିସ୍ତୃତ ଜମିଥିବା ସ୍ଥାନଟିଏ ବ୍ୟବସ୍ଥା କରିଥିବା ଅଳ୍ପ ଲୋକଙ୍କ ଭାଗ୍ୟରେ ଯୁଟିବ ଏଠି । ଜମିର ମୂଲ୍ୟ ଅସମ୍ଭବ ପ୍ରକାର ବଢ଼ି ବଢ଼ି ଚାଲିଛି ଏଠି ।

ଓଡିଶା ଭଳି କ୍ଷୁଦ୍ର ରାଜ୍ୟର ସହରଟିଏ । ତାକୁ ଏପରି ଏକ ଅତ୍ୟାଧୁନିକ ସହର ସହ ତୁଳନା କରିବା ଆଦୌ ଉଚିତ୍ ନୁହଁ ।

ଗତଥର ଫୋନ୍‌ରେ କଥା କହିବା ବେଳେ ଶ୍ୱେତପଦ୍ମା ଅରୁଣ ସହ ଅନେକ ବାକିଥିବା କଥା ମଧ୍ୟରେ ଅନିନ୍ଦ୍ୟା ସଂପର୍କରେ ଆଗ୍ରହରେ ପଚାରୁଥିଲା । ଏବେ ଅରୁଣର ଚିନ୍ତା ଫେରି ଆସିଲା ଅନିନ୍ଦ୍ୟା ପାଖକୁ ।

କ'ଣ କରୁଥିବ ଅନିନ୍ଦ୍ୟା ? ତାକୁ ଫୋନ୍ କରିବ କି ? ସେଲ୍‌ଫୋନ୍ ଉଠାଇ ନେବା ସମୟରେ ଫୋନ୍‌ର ଡାହାଣ ପାର୍ଶ୍ୱର ସମୟ କକ୍ଷାରେ ଦୃଷ୍ଟି ପଡିଲା ଅରୁଣର । ଆରେ ବାବା ! ଭଦ୍ରଲୋକଙ୍କ ଘରକୁ ରାତି ସାଢ଼େଦଶଟା ପରେ ସେ ଫୋନ୍ କରିବ ? ଏତେ ବ୍ୟସ୍ତ କାହିଁକି ? ଅନିନ୍ଦ୍ୟା ୟୁରୋପ୍ ଟୁର୍‌ରୁ ଫେରି ଆସିଛି । ଅଳ୍ପ କଥାରେ ସେତିକି ମାତ୍ର ଜଣାଇଛି ତାକୁ । ଆସନ୍ତା କାଲି ହୁଏତ ସେ ନିଶ୍ଚୟ ଆସିବ, । ଅଫିସ ଆରମ୍ଭ ପୂର୍ବରୁ ଅନିନ୍ଦ୍ୟା ସହ କଥା କହିବା ପାଇଁ ସେ କିଛି ସମୟ ରଖିବ ହାତରେ ।

ଅନିନ୍ଦ୍ୟା ଯେ ଅରୁଣର ବାଗ୍‌ଦତ୍ତା । ଝିଅଟିକୁ ଠିକ୍ କରିଛି ନିଜେ ଲୋପା । ଅନିନ୍ଦ୍ୟା ଲୋପାର ଘନିଷ୍ଠ ବାନ୍ଧବୀ । ଲୋପା କହେ, 'ଆଣ୍ଟି, ଝିଅଟିକୁ ଦେଖିଲେ ତୁମେ ଆଖି ଫେରାଇ ପାରିବନି । ରୂପକୁ ଚାହିଁ ନାଁ ଦେଇଥିଲେ ତା'ର ? ଖୁବ୍ ଭଲ ପଢ଼େ ଅନିନ୍ଦ୍ୟା । ଏଭଳି ସୁନ୍ଦରୀ, ବୁଦ୍ଧିମତୀ ଝିଅଟି ମୋ ଭାଇନା ପାଇଁ ବହୁଦିନରୁ ସ୍ଥିର କରି ରଖିଥିଲି । ମୁଁ ତାଙ୍କ ଘରକୁ ଯାଇଛି । ମାଉସୀ, ମଉସା ବେଶ୍ ମେଳାପୀ ।'

ଏତେ କମ୍ ବୟସରେ ଜଣେ ଆର୍କିଟେକ୍ଟ ଭାବରେ ବେଶ୍ ନାଁ କରିଛି ଅନିନ୍ଦ୍ୟା । ଅବଶ୍ୟ ନିଜର ସ୍ୱତନ୍ତ୍ର ସଂସ୍ଥା ଆରମ୍ଭ କରି ନାହିଁ । ଏବେ ସେ ଏକ ନାମକରା ଫାର୍ମରେ ନିଯୁକ୍ତି ପାଇଛି ।

ଶ୍ୱେତପଦ୍ମା ପସନ୍ଦ କରନ୍ତି ଝିଅଟିକୁ । ଭଲ ପରିବାରର ଝିଅଟି । ଠାକୁର ତାକୁ ରୂପ, ଗୁଣ, ବିଦ୍ୟା, ବୁଦ୍ଧି ଦେଇ ତାଙ୍କରି ଘରେ ବୋହୂ ହେବା ପାଇଁ ଜନ୍ମ ଦେଇଛନ୍ତି ।

ଅରୁଣ ମା'ଙ୍କ କଥା ମନେ ପକାଇଲା ।

ମା' ଶୋଇ ନ ଥିବେ । ବାପାଙ୍କୁ ଅପେକ୍ଷା କରିଥିବେ । ବାପା କ୍ଲବ୍‌ରେ ଖେଳି ସାରି ଫେରିବାକୁ ଆହୁରି ଘଣ୍ଟାଏ ବିଳମ୍ବ କରିବେ । ତେଣୁ ଘରକୁ ଫୋନ୍ କରାଯାଉ । ବିଛଣାରେ ଉଠିପଡିଲା ଅରୁଣ । ସେଦିନ ଜଣେ ବନ୍ଧୁଙ୍କ ଘରେ ଖାଇସାରି ଆସି ବିଶ୍ରାମ ନେବା ଅବସରରେ ଏମିତି ଅନେକ ଚିନ୍ତା ଅରୁଣକୁ ଛୁଇଁ ଯାଉଥିଲା । ଠିକ୍ ସେଇ ସମୟରେ ଶ୍ୱେତପଦ୍ମାର ଫୋନ୍ ଆସିଲା । ନିଜର ଭାବୀ ବୋହୂ ସଂପର୍କରେ କହିବାକୁ ଆାରମ୍ଭ କଲା ସେ । ଅରୁଣ ଉତ୍ତର ଦେଲା,

'ମା', ମୁଁ ଏବେ ତୁମକୁ ଫୋନ୍ କରିବାକୁ ଚାହିଁଥିଲି । ତୁମେ, ବାପା କେବେ ଆସୁଛ ବାଙ୍ଗାଲୋର ?'

'ହଁ, ମୁଁ ତାକୁ ଦେଖିଛି । ପସନ୍ଦ କେମିତି କରିବି ? ତୁମେ, ବାପା ଦେଖିବ ଯେ...... ।'

'ସବୁ କଥା ଖାଲି ଶୁଣିଲେ କ'ଣ ହେବ ? ଲୋପା କହିଲେ କ'ଣ ମୁଁ ମାନିନେବି ?'

'ନା - ତୁମେ ନିଜେ ଦେଖ । ମୁଁ କିଛି ଶୁଣିବିନି ।'

ଏ ପାଖରେ ଶ୍ୱେତପଦ୍ମାର ମୁହଁରେ ହସର ରେଖା । ଲୋପା ଝିଅ ଦେଖି ପସନ୍ଦ କରିବା ପରେ ଆମ ଦେଖିବାରେ କ'ଣ ଥାଏ ? ଅରୁଣ ଅନିନ୍ଦ୍ୟାକୁ ଦେଖିଛି, ମତ ଦେଇଛି । ବାସ୍ତବିକ ପ୍ରଭାତ, ଶ୍ୱେତପଦ୍ମା ମନ ସ୍ଥିର କରିଥିଲେ । ଏ ସଂପର୍କରେ କଥାବାର୍ତ୍ତା କରିବାକୁ ବାରମ୍ବାର ତାଙ୍କ ଘରକୁ ଆସୁଥିବା ଅନିନ୍ଦ୍ୟାର ମା' ବାପାଙ୍କୁ ଏ ବିଷୟରେ ଜଣାଇ ଦେଇଛନ୍ତି ସେମାନେ । ତେବେ ନିର୍ବନ୍ଧ ତ ହୋଇନାହିଁ । ଅରୁଣର ସେଇ ଏକା ଜିଦ୍ । ତୁମେ ଆସ । ଝିଅ ପସନ୍ଦ କଲେ ବାହାଘର ସ୍ଥିର ହେବ ।

ଲୋପା ଏସବୁ ଶୁଣିବା ପରେ କହେ, 'ଆଣ୍ଟି, ଭାଇନା ଯେ ତୁମର ବାଧ୍ୟ ପୁତ୍ର, ତା' ଜଣେଇ ଦେବାକୁ ଚାହେଁ । ଅନିନ୍ଦ୍ୟାକୁ ନେଇ କ୍ଲବ୍, ରେଷ୍ଟୁରାଣ୍ଟ ଯାଉଛି । ଏବେ ଶୁଣିଲି ମହୀଶୁର ଯାଇଥିଲେ ସେ ଦୁହେଁ ।

'ଠିକ୍ ଅଛି ମା' । ଆମେ ତ କଥା ଦେଇଛୁ ତା' ବାପା ମା'ଙ୍କୁ । ତଥାପି ତୋ ଅଙ୍କଲ୍ କହନ୍ତି, ସାତଦିନ କାମରୁ ଛୁଟି ନେବେ । ତେଣୁ ଆମେ ଭାବୁଛୁ ବାଙ୍ଗାଲୋର ଯାଇ ଅନିନ୍ଦ୍ୟା, ଅରୁଣଙ୍କୁ ଦେଖି ଆସିବୁ ।'

'ଖୁବ୍ ଭଲ ହେବ । ଅନିନ୍ଦ୍ୟାର ବାପା, ମା' ବି ସେଇ ସମୟରେ ବାଙ୍ଗାଲୋର ଆସନ୍ତୁ । ମୋ ମତରେ ଭାଇନାର କିଛି ଫ୍ରେଣ୍ଡସ୍, ଅନିନ୍ଦ୍ୟାର ଅନ୍ତରଙ୍ଗ କେତେଜଣ ଆଉ ଆପଣମାନଙ୍କର ଯେଉଁମାନେ ଆସିପାରିବେ ସମସ୍ତେ ଏକାଠି ହୋଇ ମୁଦି ପିନ୍ଧାଇବା ଫଙ୍କସନ୍‌ଟା କରିଦେବେ । ତା'ପରେ ଆପଣମାନେ ବିବାହର ଦିନ ସ୍ଥିର କରି ଫେରି ଆସିବେ ।'

ଏସବୁ ଖୁବ୍ ଭଲ କଥା ।

ଲୋପାର ବିଚାର ଏବଂ ପ୍ଲାନ୍ ଅନୁସାରେ ସବୁ କରିବା । ତେବେ ଲୋପା ସେତେବେଳେ ବାଙ୍ଗାଲୋର ଯାଇ ପାରିଥିଲେ ଭଲ ହୋଇଥାଆନ୍ତା ।

'ସେ ତ ନିଶ୍ଚୟ ଯିବ ମୁଁ ଭାବୁଛି ।' ଶ୍ୱେତପଦ୍ମା ନିଶ୍ଚିନ୍ତ ସ୍ୱରରେ କହୁଥିଲା ପ୍ରଭାତଙ୍କୁ ।

'ନାହିଁ ଶ୍ୱେତା, ସେ ଆସି ପାରିବ ନାହିଁ । ମନା କରିଛି ।' ଚିନ୍ତିତ ସ୍ୱରରେ କହିଲେ ପ୍ରଭାତ ।

ଅକସ୍ମାତ- ନିରବ ହୋଇଗଲା ଶ୍ୱେତପଦ୍ମା । ଆକାଶରେ ଅଦିନିଆ କଳାମେଘ ଖଣ୍ଡେ ଉଠାଇବା ଭଳି ଦେଖାଯାଉଥିଲା ତା'ର ମୁହଁ ।

କଅଁଳ ସତେଜ କଳିଟି ଲୋପା । ଏବେ ସେ ପ୍ରସ୍ଫୁଟିତ ପୁଷ୍ପଟିଏ । ଦୀର୍ଘ ଦୁଇବର୍ଷ ହେବ ଦିଲ୍ଲୀରେ ରହିଛି ଗବେଷଣା କାର୍ଯ୍ୟରେ । କେଉଁଆଡେ ଦୃଷ୍ଟି ଦେବାକୁ ବେଳ ନାହିଁ । ଏସବୁ ସତ୍ତ୍ୱେ ସେ ଯେ ଅରୁଣ ପାଇଁ ଯୋଗ୍ୟା ପାତ୍ରୀଟିଏ ସ୍ଥିର କରି ପାରିଛି, ତା' କିଛି କମ୍ କାମ ନୁହେଁ - ଏଇ କଥାଟି ସମ୍ଭବତଃ ଶ୍ୱେତପଦ୍ମା, ପ୍ରଭାତ ବୁଝୁଥିଲେ ବି ବୁଝି ପାରୁନଥିଲେ । ଅବଶ୍ୟ ଅନିନ୍ଦ୍ୟା ତା'ର ଘନିଷ୍ଠ ବାନ୍ଧବୀ ହୋଇଥିବାରୁ ସହଜରେ ବିବାହ ପ୍ରସ୍ତାବ ସ୍ଥିର ହୋଇ ପାରିଲା । ତଥାପି ତ ଅନେକ ମୁଣ୍ଡ ଖେଳାଇବାକୁ ପଡିଛି ଲୋପାକୁ ।

ନା - ଏମାନେ କେହି ବୁଝୁନଥିଲେ । ମଣିଷ ମାତ୍ରକେ ତ ସ୍ୱାର୍ଥପର ।

ଶ୍ୱେତପଦ୍ମା ଭାବୁଛି, ମଞ୍ଜୁ ପ୍ରାୟ ଚିଠି ପାଏ ଲୋପା ପାଖରୁ । ଫୋନ୍‌ରେ ନିୟମିତ କଣ୍ଠସ୍ୱର ଶୁଣେ ଲୋପାର । ଅଥଚ ଶ୍ୱେତାକୁ ବିଧି ଛିଣ୍ଡେଇବା ଭଳି କେବେ କିପରି ଫୋନ୍‌ରେ ଭଲମନ୍ଦ ଦି'ପଦ ପଚାରିଦିଏ ଲୋପା ।

'କ'ଣ ଭାବୁଛ, ଶ୍ୱେତା ?' ପ୍ରଭାତ ଖାଲି ଚା' କପ୍‌ଟା ପାଖ ଟିପୟରେ ରଖିବାବେଳେ ଶ୍ୱେତପଦ୍ମାର ମୁହଁକୁ ଚାହିଁ ଦେଲେ ।

କଳା ବାଦଲ ଅଚାନକ ବର୍ଷିଗଲା । ଶ୍ୱେତପଦ୍ମାର ଆଖିରେ ଏଭଳି ଅଶ୍ରୁ ହୁଏତ ପୂର୍ବରୁ କେବେ ଦେଖି ନ ଥିଲେ ପ୍ରଭାତ ।

'ହେ ! କ'ଣ ହେଉଛି ତୁମର ?

ତଥାପି ଶ୍ୱେତପଦ୍ମା ନିରବ ।

'ମୁଁ ଅବା ଲୋପାର କିଏ ? କାହିଁକି ସେ ଚିଠି ଦେବ ? ଫୋନ୍‌ରେ କହିବ, ତୁମକୁ ଦେଖି ନାହିଁ ବହୁଦିନ ହେବ । ଭଲ ଲାଗୁନାହିଁ ...'

ଶ୍ୱେତପଦ୍ମା ଆଖି ପୋଛିଲା । ନିଜ ମନକୁ ଦୁର୍ବଳ କରିବ ନାହିଁ ସ୍ଥିର କରିଥିଲେ ବି ସେ ପାରୁନାହିଁ କାହିଁକି ? ଅଯଥା ମାୟା ଘାରୁଛି ତାକୁ ।

ସତକଥା ତ । ସେ ମଞ୍ଜୁର ଝିଅ । ଅଥଚ ମୋତେ କାହିଁକି ନିୟମିତ ଫୋନ୍ କରିବ ? ବଡ ବଡ ଚିଠି ଲେଖିବ ? କି ବୋକା ମୁଁ ସତରେ ? ଅରୁଣର ବିବାହ ପାଇଁ ସେ କାହିଁକି ଯେ ଏତେ ବେଶୀ ଭାବିବ ? ଲୋପା ବୁଝେ ନାହିଁ, ଶ୍ୱେତପଦ୍ମା ଯେ ବହୁ ଦିନରୁ ତାକୁ ନ ଦେଖି ଆଶାରେ ହିଁ ରହିଛି ।

ମନ ଅକାରଣେ ବିକଳ ହୁଏ । ଅଥଚ କୌଣସି ପ୍ରକାର ଥଳକୂଳ ପାଏ ନାହିଁ ଶ୍ୱେତପଦ୍ମା । କାହା ଉପରେ କାହିଁକି ସେ ଅଭିମାନ କରୁଛି ?

ପ୍ରଭାତ ଧୀରେ ଶ୍ୱେତପଦ୍ମାର ହାତ ପାପୁଲିଟି ଉଠାଇ ନେଇ କହନ୍ତି, 'ଶ୍ୱେତା, ତୁମେ ହୁଏତ ଭାବୁଛ, ଲୋପା ଆମର କେହି ନୁହଁ ? ଦେଖ, ଆମ ସ୍ନେହ ଶ୍ରଦ୍ଧା ସେ କ'ଣ ବୁଝେ ନାହିଁ ?'

ଶ୍ୱେତପଦ୍ମା କ'ଣ ଶୁଣୁଥିଲା ? କ'ଣ ବୁଝୁଥିଲା ? ସେଦିନର କଥା ମନେ ପଡେ, ହସି ହସି କହନ୍ତି ପ୍ରଭାତ ଅନେକଥର,

'ଅପେକ୍ଷା କର, ଲୋପା ଆସୁ । ସବୁ ଠିକ୍ ହୋଇଯିବ । ତା' ଭାଇନା କଥା ସେ ବୁଝିବ ନାହିଁ ? ଆମେ କ'ଣ ବୁଝିବା ଆଜିକାଲିକାର ଏ ପିଲାଙ୍କୁ ? ପ୍ରସ୍ତାବ ଯାହା ଆସିବ ଆସୁ । ଲୋପା ନ ଆସିବା ଯାଏ ମୁଁ କାହାକୁ ଜବାବ ଦେଇ ପାରିବି ନାହିଁ । ଅରୁଣ ତ ଲୋପା ଯାହା କହିବ, ମାନିଯିବ ।'

ସେତେବେଳେ ଦୃଢ଼ କଣ୍ଠରେ କହେ ଶ୍ୱେତପଦ୍ମା,

'ଏତେ ବେଶୀ ଆଶା କରିବା ହିଁ ତୁମର ଭୁଲ୍ । ଆମ ପୁଅ ପାଇଁ ଆମେ ଭାବିବା । ଅନ୍ୟ କେହି କାହିଁକି ଦାୟିତ୍ୱ ନେବେ ? ଅନ୍ୟମାନଙ୍କୁ ଆମେ ଦାୟିତ୍ୱ ଦେଇ ହଇରାଣ କରିବା ଠିକ୍ ନୁହେଁ ।'

ପ୍ରଭାତଙ୍କ ପାଖରୁ ଉତ୍ତର ହଜିଯାଏ । ତାଙ୍କ ତୁଣ୍ଡର ଭାଷାମାନେ ହାରମାନି

ନିଥର ହୁଅନ୍ତି । ଠିକ୍ ସେତିକି ବେଳେ ପ୍ରଭାତଙ୍କ ମନକୁ ଛୁଇଁଯାଏ, 'ସତକଥା ତ କେତେ ଏକା ଆମେ ଦୁହେଁ ?'

କିନ୍ତୁ କାହିଁକି ? ଇଚ୍ଛା କଲେ ଆମେ କ'ଣ ଖୁସୀ ହୋଇ ପାରନ୍ତୁ ନାହିଁ ।

କ'ଣ ଅସୁବିଧା ଅଛି ସ୍ୱାମୀ, ସ୍ତ୍ରୀ ଦୁହେଁ ଆନନ୍ଦରେ ସମୟ ବିତାଇବାରେ ?

ଏକମାତ୍ର ପୁତ୍ର ଅରୁଣ ପ୍ରତିଷ୍ଠିତ । ତାଙ୍କ ଇଣ୍ଡଷ୍ଟ୍ରୀ ଏ ରାଜ୍ୟର ନାମକରା ଇଣ୍ଡଷ୍ଟ୍ରୀ । କାମ କରୁଥିବା ଲୋକମାନେ ଭଲ ଦରମା ସହ ସମସ୍ତ ପ୍ରକାର ସୁଖ ସୁବିଧା ପାଇ ଆନନ୍ଦରେ ଜୀବିକା ନିର୍ବାହ କରନ୍ତି । ସେମାନଙ୍କ ନିଷ୍ଠା ପାଇଁ ସବୁ ଠିକ୍ ଚାଲିଛି । ଏସବୁ ନେଇ ପ୍ରଭାତଙ୍କର ଏମିତି କିଛି ଅଯଥା ଚିନ୍ତା କରିବାର ନାହିଁ ।

ତେବେ ଆମ ଦୁହିଁଙ୍କ ବିଚାରରେ କେଉଁଠି କ'ଣ ଭୁଲ ରହିଛି ନିଶ୍ଚୟ ।

ପ୍ରଭାତ ଶ୍ୱେତପଦ୍ମାକୁ ଚାହିଁ ରହିଲେ କିଛି ସମୟ । ବହୁତ ଦିନରୁ ଯେମିତି ଏହି ମେସିନ୍ ମଣିଷଟି ଚଳପ୍ରଚଳ ହେଉଛି ତାଙ୍କ ପାଖରେ । ଅଥଚ ସ୍ନେହ, ଶ୍ରଦ୍ଧା, କର୍ତ୍ତବ୍ୟ କେଉଁଥିରେ ତ କିଛି ଅଭାବ କରିନାହିଁ ସେ ତାଙ୍କ ଜୀବନରେ, ତାଙ୍କ ପରିବାରରେ ? ସବୁ ଠିକ୍ ଅଛି, ଅଥଚ ସେଇ ନାହିଁ ନାହିଁର ହାହାକାର କେବେ କିପରି ଗ୍ରାସ କରିଯାଏ ତାଙ୍କ ମନକୁ ।

କେବେ କେବେ ମନେହୁଏ ଶ୍ୱେତପଦ୍ମା ରକ୍ତ ମାଂସର ମଣିଷ ନୁହେଁ । ବାସ୍ତବରେ କଳ ତିଆରି କଣ୍ଢେଇଟାଏ । ହସେ, ଖେଳେ, ଚାଲେ, ବୁଲେ କିନ୍ତୁ ସେସବୁରେ ପ୍ରାଣ ନ ଥାଏ ।

କାହିଁକି ?

'ମୋତେ ଶାସ୍ତି ଦେବାକୁ ଇଚ୍ଛା ତ ଶାସ୍ତି ଦିଅ । ମାତ୍ର ତୁମେ ଖୁସୀ ହୁଅ । ଖୁସିରେ ରହ । ମୋର ଘର, ପରିବାର ସବୁ ତ ତୁମକୁ ନେଇ । ତୁମକୁ ବାଦ୍ ଦେଇ ମୁଁ ଅନ୍ୟଥା ଭାବି ପାରେ ନାହିଁ ।'

ପ୍ରଭାତଙ୍କ ମୁହଁ କଠିନ ଦେଖାଯାଉଛି । ଶ୍ୱେତପଦ୍ମା ଅସ୍ଥିର ହୋଇଉଠିଲା । ଏମିତି ଭାବ ନେଇ ବସି ରହିବାର ପ୍ରଭାତଙ୍କୁ ତ ସେ ଦେଖିନି କେବେ । କ'ଣ ହେଲା ତାଙ୍କର ?

- ହେଇ, କ'ଣ ଭାବୁଛ ଏତେ ? ତୁମ ଫ୍ୟାକ୍ଟ୍ରିରେ କିଛି ଅସୁବିଧା ହେଲା କି ?

- ନା, କିଛି ନାହିଁ, ମୁଁ ଉଠେ । ମୋତେ ବାହାରିବାକୁ ହେବ ।

- ଶୁଣ, ମୁଁ କ'ଣ ଭୁଲ କହିଲି କି ? ତୁମେ ମୋ ଉପରେ ରାଗିନ ତ । ପ୍ରଭାତଙ୍କ ମନ କରୁଣ ହେଇଉଠିଲା । ସେ କହିଲେ, 'ନା ଶ୍ୱେତା, ତୁମ ଉପରେ ରାଗିବାରେ କ'ଣ ଅଛି କୁହ ତ ? ତୁମେ ଠିକ୍ କହିଛ । ଆଶା ରଖିଲେ କଷ୍ଟ ପାଇବାକୁ ହୁଏ । ବାସ୍ତବିକ ଲୋପା ମଂଙ୍କୁର ଗେହ୍ଲା ଝିଅ । ଆମର କି ଅଧିକାର ଅଛି ତା' ଉପରେ ? ସ୍ନେହୀ ପିଲାଟାଏ । ଆମ ଶ୍ରଦ୍ଧା ପାଇ ଆମକୁ ସେ କ'ଣ ଟିକିଏ ନିଜର କରି ନାହିଁ । ତା' ତୁମେ ଅସ୍ୱୀକାର କରିପାରିବ ନାହିଁ, ଶ୍ୱେତା ।'

'ହେଲା ବାବା, ଆଜି ମୁଁ ଲୋପାକୁ ଫୋନ୍ କରିବି । ଖୁସୀ ତ ? ଆମେ ବାଙ୍ଗାଲୋର ଯିବା ବିଷୟ ତାକୁ ଜଣାଇଦେବି ।' ଶ୍ୱେତପଦ୍ମା ହସିଲା ।

ପ୍ରଭାତ ହାତ ଘଣ୍ଟାକୁ ଚାହିଁ ଚୌକିରୁ ଉଠିବା ବେଳେ କ'ଣ ହଠାତ୍ ମନେ ପଡିବା ଭଳି କହିଲେ, 'ଶ୍ୱେତା, ଚିଠି କେତେ ଖଣ୍ଡ ଛାଡି ଦେଇ ଆସିଛି ଅଫିସ୍‌ରେ । ଅରୁଣର ଚିଠି ଅଛି । ଏତେ ବ୍ୟସ୍ତ ରହିଲି ଯେ ଚିଠି ଖଣ୍ଡିକ ଚିରି ପାରି ନାହିଁ ।

- ଶେଷରେ ଛାଡି ଦେଇ ଚାଲି ଆସିଲ ।

- ବ୍ୟସ୍ତ ହୁଅନା, ଆଜି ନେଇ ଆସିବି । ଗତ ରାତିରେ ତୁମେ ତ ଫୋନ୍‌ରେ କଥା କହିଥିଲ ଅରୁଣ ସାଙ୍ଗରେ । ଚିଠି କିଏ କାହାକୁ ଲେଖୁଛି ? ଫୋନ୍ ବା କଂପ୍ୟୁଟର୍‌ରେ ଇଣ୍ଟର୍‌ନେଟ୍‌ରେ ମେଲ୍ ପଠେଇଲେ, ଚ୍ୟାଟ୍ କଲେ ଶୀଘ୍ର ଖବର ମିଳୁଛି । ତୁମ ପୁଅ ତୁମକୁ ବେଶୀ ଭଲ ପାଏ ତ, ତେଣୁ ଚିଠି ଖଣ୍ଡେ ଲେଖିଦିଏ ।

ବାଙ୍ଗାଲୋର ସହରର ଏକ ନବନିର୍ମିତ ପାଞ୍ଚତାରକା ହୋଟେଲ । ସାଜସଜ୍ଜାରେ ଏ ଦେଶର ସଂସ୍କୃତି ଓ ଐତିହ୍ୟର ଛାପ । ପ୍ରତିଟି କୋଠରୀର ପରିଷ୍କାର, ପରିଚ୍ଛନ୍ନତା ଏବଂ ହୋଟେଲଟିର ପରିଚାଳନା ଅତ୍ୟନ୍ତ ତ୍ରୁଟିଶୂନ୍ୟ । ବିଦେଶର କୌଣସି ଏକ ବଡ ହୋଟେଲ ସହ ତୁଳନା କଲେ ମନେ ହେବ, ଏ ଦେଶର ସମ୍ମାନ ଅନେକ ଉଚ୍ଚରେ । ସେଠାରେ ଦୁଇ, ତିନି ଦିନ ହେବ ଅବସ୍ଥାନ କରୁଛନ୍ତି ଶ୍ୱେତପଦ୍ମା ଓ

ପ୍ରଭାତ । ଅଧିକାଂଶ ସମୟ ଅରୁଣ ଆସି ମା' ବାପାଙ୍କ ପାଖରେ । ସେଇ ଅଚିହ୍ନା ଗଣିତର ସୂତ୍ରଧରି ସେମାନେ ଚିନ୍ତିତ ।

ଅବଶ୍ୟ ଅରୁଣକୁ ଏ ସଂପର୍କରେ ବ୍ୟସ୍ତ ବିବ୍ରତ ହେବାର ଦେଖାଯାଉନାହିଁ । ଦିନକ ପରେ 'ଏନ୍‌ଗେଜ୍‌ମେଣ୍ଟ୍ ସେରିମନି' ବା ନିର୍ବନ୍ଧ କୁହାଯାଇ ପାରେ । ଅନିନ୍ଦ୍ୟାର ବାପା, ମା' ଆସି ଯାଇଛନ୍ତି । ବର, କନ୍ୟା ଦୁଇପକ୍ଷଙ୍କ ସହଯୋଗରେ ଉତ୍ସବଟି ଭଲରେ ସଂପନ୍ନ ହେବାର ସମସ୍ତ ବନ୍ଦୋବସ୍ତ କରାଯାଇଛି ସେଇ ସୁଦୃଶ୍ୟ, ସୁପରିଚାଳିତ ହୋଟେଲଟିରେ । ପ୍ରଭାତଙ୍କର କେତେଜଣ ଭଉଣୀ ସେମାନଙ୍କ ସ୍ୱାମୀମାନଙ୍କ ସହ ପହଞ୍ଚିଛନ୍ତି । ମଂଜୁଳା ମଧ ନିଜର ବ୍ୟସ୍ତ କାର୍ଯ୍ୟକ୍ରମ ମଧ୍ୟରୁ ସମୟ ବାହାର କରି ବାଙ୍ଗାଲୋର ଆସିଛି ନିଜର ପ୍ରିୟ ବାନ୍ଧବୀ ଶ୍ୱେତପଦ୍ମାର ଅନୁରୋଧ ରକ୍ଷାକରି । ତେବେ ଅରୁଣ, ଅନିନ୍ଦ୍ୟାର ପରିବାରର ଲୋକମାନଙ୍କ ସଂଖ୍ୟା ହୁଏତ ହାତ ଗଣତିରେ କୋଡ଼ିଏ ଜଣ ହୋଇପାରେ । କିନ୍ତୁ ବର, କନ୍ୟା ଦୁଇଜଣଙ୍କର ଘନିଷ୍ଠ ବନ୍ଧୁମାନଙ୍କ ସଂଖ୍ୟା ଯେ ଖୁବ୍ ବେଶୀ ।

ଏମାନେ ସମସ୍ତେ ଆଗ୍ରହରେ ଅପେକ୍ଷା କରିଥିଲେ ସେଇ ଉପସ୍ଥିତ ସ୍ମରଣୀୟ ସନ୍ଧ୍ୟାକୁ । ଏପାଖରେ ଅରୁଣକୁ ଡାକି ପ୍ରଭାତ, ଶ୍ୱେତପଦ୍ମା ପଚାରୁଥିଲେ, 'ବାବୁ, ଶୁଭ କାର୍ଯ୍ୟରେ ବିଳମ୍ବ କରିବା ଠିକ୍ ନୁହେଁ । ଯେଉଁ ତିଥିଟି ସ୍ଥିର କରାଯାଇଛି, ସେ ଦିନଟି ପାଇଁ ଆମ କାହାର ଆପତ୍ତି ନାହିଁ । ଝିଅକୁ ଠିକ୍ ସୁଝୁଛି, ବିବାହ ପାଇଁ ମଧ ଉପଯୁକ୍ତ ସମୟ । ତୁ ଅନିଚ୍ଛା ପ୍ରକାଶ କରୁଛୁ କାହିଁକି ?'

ଏଥର ଅରୁଣ ତା'ର ମତ ଜଣାଇଲା ଅତ୍ୟନ୍ତ ଧୀର ସ୍ଥିର ଚିତ୍ତରେ, 'ଦେଖ ମା', ଆଜି ଦିନର କାମଟି ଭଲରେ ଶେଷ ହେଉ । କିନ୍ତୁ ବିବାହର ତାରିଖ ହଠାତ୍ ଜଣାଇବାର ଆବଶ୍ୟକତା ନାହିଁ । ମୁଁ ଦେଖେ । ମୋତେ ମାସଟିଏ ଛୁଟି ମିଳିବାରେ କିଛି ଅସୁବିଧା ହେଉଛି କି ? ତା' ନ ହେଲେ ମୁଁ ଏମିତି ତରତରରେ ବିବାହ କରି ଖୁସୀ ହୋଇ ପାରିବିନି ।'

ଶ୍ୱେତପଦ୍ମା, ପ୍ରଭାତ ପରସ୍ପରର ମୁହଁକୁ ଚାହିଁ ନିରବ ରହିଲେ । ଅରୁଣ ତା'ର ଚୂଡାନ୍ତ ନିଷ୍ପତ୍ତି ଜଣାଇ ଚାଲିଯାଇଛି । ନିର୍ଦ୍ଦିଷ୍ଟ ସମୟର ପଇଁଚାଳିଶ ମିନିଟ୍ ପୂର୍ବରୁ ସେ ନିଶ୍ଚୟ ଆସି ପହଞ୍ଚିବ କହିଯାଇଛି ।

ସେମାନେ ଠିକ୍ ଜାଣିଛନ୍ତି । ବିବାହ ଦିନ ଲୋପା ଆସି ପାରିବ କି ନାହିଁ ଜାଣିନପାରି ଅରୁଣ କିଛି ସ୍ଥିର କରି ପାରୁନାହିଁ ।

ଅନିନ୍ଦ୍ୟାର ସୁସଜ୍ଜିତ ସୁନ୍ଦର ରୂପଟି ଶ୍ୱେତପଦ୍ମାର ମନରୁ ସମସ୍ତ ଦୁଃଖ ପୋଛି ନେଇ ଏକ ଅଜଣା ଆନନ୍ଦ ଭରି ଦେଇଥିଲା ସେଦିନ । ସେ ଭାବୁଥିଲା,

'ସତରେ, ଏ ଝିଅଟିର ଜନ୍ମ ମୋ ଅରୁଣ ପାଇଁ ।'

ଅରୁଣ ଅନିନ୍ଦ୍ୟାର ଅନାମିକାରେ ହୀରାର ମୁଦିଟିଏ ପିନ୍ଧାଇ ଦେଲା । ସନ୍ଧ୍ୟା ସମୟର ସେଇ ମାହେନ୍ଦ୍ର ମୁହୂର୍ତ୍ତରେ ବେଦ ପାଠ, ଶଙ୍ଖ ଧ୍ୱନି ମଧ୍ୟରେ ସୌନ୍ଦର୍ଯ୍ୟମୟୀ ଅନିନ୍ଦ୍ୟା ସମ୍ମୋହିତ ଭାବେ ଅରୁଣର ଆଙ୍ଗୁଠିରେ ଅନୁରୂପ ସୁନ୍ଦର ମୁଦିଟିଏ ପିନ୍ଧାଇ ଦେଲା ।

ହସଖୁସିର ଉତ୍ସବମୟ ଏହି ସୁନ୍ଦର ଲଗ୍ନରେ ଶ୍ୱେତପଦ୍ମାର ମନକୁ ଛୁଇଁଗଲା, 'ଆହା, ମୋ ଲୋପା ଥାଆନ୍ତା କି ?'

ମଂଜୁଳା କହିଲା, 'କ'ଣ ଭାବୁଛୁ, ଶ୍ୱେତା ?'

'ନା ମଂଜୁ, ଏ ମୋର ଆନନ୍ଦର ଅଶ୍ରୁ ।'

'ସତ କହିଲୁ, ତୁ ଲୋପାକୁ ମନେପକାଉ ନାହୁଁ ?'

'ଥାଉ ମଂଜୁ, କ'ଣ ପଢୁଛି, କ'ଣ ସେ ଗବେଷଣାରେ ମାତିଛି, ମୋ ବୁଝିବାର ବାହାରେ ସେ ସବୁ ।'

'ଏବେ କ'ଣ ଲୋପା କଥା ଆମେ ଭାବିବା ? ଦେଖିଲୁ କେତେ ଶୃଙ୍ଖଳିତ ଭାବରେ ଏସବୁ ଚାଲିଛି ? ଏହି ଆନନ୍ଦ ମୁହୂର୍ତ୍ତରେ ତୁ ଟିକେ ଖୁସୀ ହେଲୁ । ପ୍ରଭାତକୁ ଦେଖୁଛୁ ? କେତେ ହସୁଛନ୍ତି ତାଙ୍କ ବନ୍ଧୁମାନଙ୍କ ସାଙ୍ଗରେ ? ଆ, ଯିବା ସେପାଖକୁ ।'

ଶ୍ୱେତପଦ୍ମା ଖୁସୀ ହେଲା । ମଂଜୁଳା ତା'ର ହାତ ଧରି କେଉଁ ସ୍ୱର୍ଗରାଜ୍ୟକୁ ନେଇ ଯାଉଛି କି ? ବାସ୍ତବିକ ସବୁ କଥା ଖୁବ୍ ଭଲ ଲାଗୁଛି । ହୁଏତ ପ୍ରତି ପବିତ୍ର କାର୍ଯ୍ୟ ପାଇଁ ଏକ ଅମୃତମୟ ସମୟ ବିଧି ନିର୍ଦ୍ଦିଷ୍ଟ ହୋଇ ରହିଥାଏ । ସାଧାରଣ ମଣିଷଟି ଯାହା ନିଜେ ବିଚାର କରି ସ୍ଥିର କରେ, ତା' ତ ଈଶ୍ୱରଙ୍କର ଇଚ୍ଛାରେ ହିଁ ସଂପନ୍ନ ହୋଇଥାଏ ।

ଶ୍ୱେତପଦ୍ମା ସେଇ ଆନନ୍ଦର ସ୍ରୋତରେ ନିଜକୁ ମିଶାଇ ଦେଲା । ସେମାନେ କେହି ତାକୁ ଏକା ରହିବାକୁ ଦେବେ ନାହିଁ । ପ୍ରଭାତ, ଅରୁଣ, ଅନିନ୍ଦ୍ୟା ସମସ୍ତେ ତା' ପାଖକୁ ଆସୁଛନ୍ତି ଯେ ।

ଏ କ'ଣ ? ଅନିନ୍ଦ୍ୟା ତାଙ୍କ ପାଦ ଛୁଉଁଛି, ଅରୁଣ ବି । ମୁଁ କ'ଣ ଭୁଲିଯାଇଛି, ତୁ ମୋର ଧନ । ତୁ ମୋର ଲକ୍ଷ୍ମୀ । ଦେଖିଲୁ ମୁଁ ତୋ ପାଇଁ କ'ଣ ଆଣିଛି ? ରତ୍ନ ଖଚିତ ଏହି କଙ୍କଣ ଦୁଇପଟି ତୋର ପ୍ରାପ୍ୟ ମା' । ନିରବରେ ମନେ ମନେ ଏମିତି କେତେ କଥା କହୁଥିଲା ଶ୍ୱେତପଦ୍ମା । ଏବଂ ପର୍ସରୁ ଏକ କାରୁକାର୍ଯ୍ୟ କରା ସୁନ୍ଦର ବାକ୍ସରେ ଯତ୍ନରେ ସାଇତା ହୋଇ ରଖାଯାଇଥିବା କଙ୍କଣ ଦୁଇପଟି ଅନିନ୍ଦ୍ୟାର ହାତରେ ପିନ୍ଧାଇ ଦେଇ ଅରୁଣ ଓ ଅନିନ୍ଦ୍ୟାକୁ କୋଳେଇ ନେଲା ଶ୍ୱେତପଦ୍ମା ।

ଶ୍ୱେତପଦ୍ମା, ପ୍ରଭାତ ପୁଅର ନିର୍ବନ୍ଧ ଶେଷ କରି ଫେରିବା ପରେ ପାଞ୍ଚ, ଛଅମାସ ବିତିଗଲାଣି । ଅଥଚ ଅରୁଣର ସେଇ ଏକା ଜିଦ୍,

'ଏବେ ଥାଉ, କିଛିଦିନ ଅପେକ୍ଷା କରିବା, ମୋର ଛୁଟି ନାହିଁ ।'

ସେଦିନ ଅଫିସ୍‌ରୁ ଫେରି ପ୍ରଭାତ ଏକ ଶୁଭ ଖବର ଶୁଣାଇଲେ ଶ୍ୱେତପଦ୍ମାକୁ, ହାତରେ ଅରୁଣର ଚିଠି ।

'ଦେଖ, ତୁମ ପୁଅ ନିର୍ଦ୍ଦିଷ୍ଟ ସମୟ ସୀମା ଜଣାଇ ଦେଇଛି । ସେଇ ସମୟ ମଧ୍ୟରେ ଆମକୁ ବିବାହଲଗ୍ନ ସ୍ଥିର କରିବାକୁ ହେବ ।'

ପ୍ରଭାତଙ୍କ ହାତରୁ ଚିଠିଟି ନେଇ ପଢ଼ିବାକୁ ଆରମ୍ଭ କଲା ଶ୍ୱେତପଦ୍ମା । ଅରୁଣ ଲେଖିଛି,

- ମା' ମୁଁ ଭାବୁଛି, ଏଥର ତୁମେ ଖୁସୀ ହେବ । ତୁମେ ତୁମ ଖୁସିରେ ସବୁ ଆୟୋଜନ କର, ଯାହାହେଉ ମୁଁ ମାସଟିଏ ଛୁଟି ପାଉଛି । ଆଶା କରୁଛି, ଲୋପା ମୋ ବିବାହରେ ଯୋଗ ଦେବ .....

ଚିଠିର ଏଇ ଅଂଶଟି ବାରମ୍ବାର ପଢୁଥିଲା ଶ୍ୱେତପଦ୍ମା । ଏବେଠାରୁ ଅନେକ କାମର ତାଲିକା ପ୍ରସ୍ତୁତ କରିବାକୁ ହେବ ଯେ । ଚୁପ୍‌ଚାପ୍ ବସିରହିଲେ ଚଳିବ ନାହିଁ ।

ମନ ବିକ୍ଷିପ୍ତ, ଅସ୍ଥିର ହେଉଛି । ହାତ ପାଖରେ ଅନେକ ମଣିମୁକ୍ତାର ଐଶ୍ୱର୍ଯ୍ୟ । ସେସବୁକୁ ଏକାଠି ସାଉଁଟି ନେବାର ଆନନ୍ଦକୁ କିପରି ସେ ଗ୍ରହଣ କରିବ, ସେଇ ରାସ୍ତା ଖୋଜି ପାଉ ନାହିଁ ଶ୍ୱେତପଦ୍ମା ।

ପ୍ରଭାତ ନିଶ୍ଚିନ୍ତ ନିଦରେ ଶୋଇଯାଇଛନ୍ତି । ଶ୍ୱେତପଦ୍ମାର ଆଖିପତା ଭାରି ହୋଇ ଆସୁଛି । ସକାଳେ ଶୀଘ୍ର ଉଠିବାକୁ ହେବ ଯେ ।

'ତୁମେ ଏପର୍ଯ୍ୟନ୍ତ ପ୍ରସ୍ତୁତ ହୋଇନ ? ପୂଜାଘରେ କାମ ଶେଷ କରିବ ? କ'ଣ ଆଉ ଭାବୁଛ ? ତୁମର ସବୁ ଚିନ୍ତା ଶେଷ ହୋଇଛି । ଚାଲ, ଚାଲ, ଏଆର୍‌ପୋର୍ଟ ଯିବା ସମୟ ହୋଇଯାଉଛି ।'

ଶ୍ୱେତପଦ୍ମା ଚମକି ଉଠିଲା ପ୍ରଭାତଙ୍କ କଥାରେ । ସବୁ ଚିନ୍ତା ଶେଷ ହୋଇଯାଇଛି । ଓଃ ଶୀଘ୍ର ବାହାରିବାକୁ ହେବ । ଦିଲ୍ଲୀ ଫ୍ଲାଇଟ୍ ଠିକ୍ ସମୟରେ ପହଞ୍ଚିବ । ଶ୍ୱେତପଦ୍ମା ତରତରରେ ପ୍ରସ୍ତୁତ ହେଉଥିଲା । ତଥାପି ମନ କରୁଣ ହେଉଛି ।

ଲୋପା ତ ଏ ଘରକୁ ଆସିବ ନାହିଁ । ଏତେ ଦିନକେ ମଂକୁ ହାତରେ ଚାନ୍ଦ ପାଇଛି ।

ଦର୍ପଣରେ ନିଜକୁ ଚାହିଁ ଅଳ୍ପ ହସିଲା ଶ୍ୱେତପଦ୍ମା । ମଂଜୁକୁ ହିଂସା କରୁଛୁ କି ? ନା - ଏବେ ଖୁସୀ ହେବା ସମୟ ଆସିଛି । ଦୀର୍ଘଶ୍ୱାସ, ଅଯଥା ମନ ଊଣା କରିବା ଭଳି ବୋକାମୀ କରନା, ଶ୍ୱେତପଦ୍ମା ।

- ମୁଁ ଖୁବ୍ ଖୁବ୍ ଖୁସୀ । ଏ ପୃଥିବୀରେ ମୋଠାରୁ ଅଧିକ ଭାଗ୍ୟବତୀ କେହି ନାହାଁନ୍ତି ।

ସେଇ ମୁହୂର୍ତ୍ତରେ ଏମିତି କିଛି ଚିତ୍କାର କରିବାକୁ ଇଚ୍ଛାହେଲା ଶ୍ୱେତପଦ୍ମାର । ମାତ୍ର ତା' ସେ କଲା ନାହିଁ । ନିଜକୁ କହିଲା, 'ଠାକୁରେ, ମୋତେ କ୍ଷମା କର । ହେ ରକ୍ଷାକର୍ତ୍ତା, ମୋ ସଂସାରକୁ ତୁମେ ଦୃଷ୍ଟି ଦେଇଥାଅ । ମୁଁ ତ ନିମିତ୍ତ ମାତ୍ର, ତୁମ

ଇଚ୍ଛାରେ ପରିଚାଳିତ ଅତି ସାଧାରଣ ଶକ୍ତିହୀନ ମଣିଷଟିଏ । ମୋତେ କିଏ ଚାଲିବାର, ସବୁ ସହ୍ୟ କରିବାର ସାହସ ଦେଇଛି ?' ହସ ହସ ମୁହଁରେ ବାହାରି ଆସିଲା ଶ୍ୱେତପଦ୍ମା ପ୍ରଣତି ଜଣାଇ ।

ତାକୁ ମାନିବା ଭଳି ହାଲକା, ନିଜ ପସନ୍ଦର ଭଲ ଶାଢ଼ି ଖଣ୍ଡେ ପିନ୍ଧିଛି ଶ୍ୱେତପଦ୍ମା । ସେ ପାଖରେ ଗାଡି ଷ୍ଟାର୍ଟ କରି ଅପେକ୍ଷା କରିଥିଲେ ପ୍ରଭାତ । ଡ୍ରାଇଭର୍ ଅସୁସ୍ଥ ହୋଇପଡିଛି । ଆସିପାରିବ ନାହିଁ । ଇଚ୍ଛା କରିଥିଲେ ଆଉଜଣଙ୍କୁ ସେ ଡକାଇ ପାରିଥାଆନ୍ତେ, ମାତ୍ର ପ୍ରଭାତ ତା' କଲେ ନାହିଁ । ସକାଳର ଖରା ତାଙ୍କୁ ଜହ୍ନରାତି ଭଳି ମନେହେଲା । ତାଙ୍କର ଯେ ସେଦିନ ଅଫିସରେ କିଛି ଜରୁରୀ କାର୍ଯ୍ୟ ଥାଇପାରେ, ତା' ସେ ମନେ ପକାଇବାକୁ ଚାହିଁଲେ ନାହିଁ । ବରଂ ସେକ୍ରେଟାରୀକୁ ନିର୍ଦ୍ଦେଶ ଦେଇଥିଲେ, 'ଖୁବ୍ ଆବଶ୍ୟକ ନ ହେଲେ ଆଜି ଏବଂ ଏ ସପ୍ତାହରେ ମୋତେ କିଛି ଜଣାଇବ ନାହିଁ ।'

- ସାର୍, ଏ ସପ୍ତାହରେ ? ଝିଅଟି ଡରି ଡରି ପଚାରୁଥିଲା । ସେ ଏୟାରପୋର୍ଟ୍ ଯିବା ପୂର୍ବରୁ କେତେ ଖଣ୍ଡ କାଗଜରେ ତାଙ୍କର ଦସ୍ତଖତ କରିବାର ଆବଶ୍ୟକ ଥିବାରୁ ଝିଅଟି ଅଫିସ୍‌ରୁ ଘରକୁ ନେଇ ଆସିଥିଲା ।

ପ୍ରଭାତ କହିଲେ, 'ସୁମିତ୍ରା, ବ୍ୟସ୍ତ ହେବାରେ କିଛି ନାହିଁ । ଜରୁରୀ ପଡିଲେ ମୋ ସେଲ୍‌ଫୋନ୍‌ରେ ମୋତେ କନ୍‌ଟାକ୍ଟ କରିବ ।'

ଗାଡି ଷ୍ଟାର୍ଟ ହେବା ପରେ ବି ଯାଙ୍କ କାମ ସରେ ନାହିଁ । ହାତ ଘଣ୍ଟାକୁ ଚାହିଁଲା ଶ୍ୱେତପଦ୍ମା ।

- ଦେଖ ଶ୍ୱେତା, ଦିଲ୍ଲୀ ଫ୍ଲାଇଟ୍ ଆସିବାରେ ଲେଟ୍ ହେଉଛି । ମଂଜୁ ବୋଧହୁଏ ଫୋନ୍ କରି ବୁଝିଛି । ନଚେତ୍ ଏପର୍ଯ୍ୟନ୍ତ ସେ ଆସି ନାହିଁ କାହିଁକି ?

ସେ ଦୁହେଁ ତରତରରେ ବାହାରି ଚାଲିଆସିଲେ, ଫୋନ୍ କରି ବୁଝିଥିଲେ ହୋଇଥାଆନ୍ତା । କେବେ କେବେ ଲେଟ୍ ହୁଏ । ମାତ୍ର ଦିଲ୍ଲୀ ଫ୍ଲାଇଟ୍ ଏବେ ଠିକ୍ ସମୟରେ ଆସୁଛି । ପ୍ରଭାତ ତ ପ୍ରାୟ ଯିବା ଆସିବା କରନ୍ତି ।

ସାନ ଝିଅଟିଏ ତା'ର ମା' ହାତ ଧରି ଆସୁଛି । ଶ୍ୱେତା ଚାହିଁ ରହିଲା

ପିଲାଟିକୁ, ଦୃଶ୍ୟ ବଦଳି ଯାଉଛି । ସେଦିନର ଲୋପା ଠୁକୁ ଠୁକୁ ଚାଲି ଆସୁଛି କି ତା' ପାଖକୁ, ହାତ ବଢ଼େଇ କହୁଛି, ଦେ ... ଦେ', ନେ ... ନେ ମା', ନେ ।

ଶ୍ୱେତପଦ୍ମା ପ୍ରକୃତିସ୍ଥ ହେଲା, ନା ତାକୁ ନୁହେଁ । ଝିଅଟି ତା' ମା'କୁ କହୁଛି, ତାକୁ କାଖ କରିବାକୁ ।

ଧନ୍ୟ କହିବ ମଂଜୁକୁ । ସବୁ ଖଞ୍ଜି ଦେଇଛି ସେ ଲୋପା ପାଇଁ । ଏପରି ଯତ୍ନ କିଏ କରିପାରିବ ? ଜନ୍ମରୁ ଗଢ଼ିଛି ଶିଶୁଟିକୁ ।

ସାନଟି ବେଲୁ ପାଠର ପାହାଚରେ ସର୍ବୋଚ୍ଚ ସମ୍ମାନ ପାଇ ଉଠିଯାଇଛି ଲୋପା । ତାକୁ ବାଛିବାକୁ ନାହିଁ । ପାଠ, ଖେଳ, ସଂଗୀତ ସବୁଥିରେ ସ୍ୱୟଂସମ୍ପୂର୍ଣ୍ଣା ସରସ୍ୱତୀ ।

'ଆରେ ଶ୍ୱେତା ? କେତେଦିନ ପରେ ଦେଖା ? ଯେବେ ଆସୁଚୁ ଏଇ ବୈଠକ ଘରେ ବସି ଚାଲିଯାଉଛୁ । ଆଜି ଭିତରକୁ ଟିକେ ଆସ, ବସିବା । ମୋର ସନ୍ଧ୍ୟା ପର୍ଯ୍ୟନ୍ତ କାମ ନାହିଁ ।' ସେଦିନ ମଂଜୁଳାର ଅନୁରୋଧ ଏଡାଇ ନ ପାରି ଭିତରକୁ ଗଲା ଶ୍ୱେତପଦ୍ମା ।

'ଏଠି କେହି ନାହିଁ । ଝିଅ ତ ଦୁଇବର୍ଷରୁ ଅଧିକ ହେବ ତା' ଗବେଷଣାରେ ବ୍ୟସ୍ତ ରହି ଆସି ପାରିନାହିଁ । ଏଠି ମୋ ପାଖରେ କିଏ ଅଛି ? ଅବଶ୍ୟ ଦିଲ୍ଲୀ ଗଲେ ତାକୁ ଥରେ ଦେଖିଦେଇ ଆସେ । ସେତିକି ଯାହା ସାନ୍ତ୍ୱନା ।'

ମଂଜୁଳା, ଶ୍ୱେତପଦ୍ମାକୁ ଘର ଦେଖାଇଲା । ତଳେ ଦୁଇ ବଖରା । ଅତ୍ୟନ୍ତ ପରିଷ୍କାର ପରିଚ୍ଛନ୍ନ ବଡ ହଲ୍‌ଟାଏ । ଅନ୍ୟଟି ମଂଜୁଳାର ଅଫିସ୍, ଷ୍ଟଡି ସବୁ କୁହାଯାଇ ପାରେ । ସେଇଠି ପଡିଥାଏ ସେ ରାତି ଅଧ ଯାଏ । ମନେ ପଡିଲେ ଉଠି ଖାଇବାକୁ ଯାଏ । ନିଦ ଆସିଲେ ଶୋଇବ, ନଚେତ୍ କାମରେ ରାତି ପାହିଯାଏ । କେବେ କ୍ଳାନ୍ତ ହେବାପରି ମନେହୁଏ ନାହିଁ ।

'ମୋର ବିଶ୍ରାମ ହୋଇପାରେ ନାହିଁ ଏସବୁ 'ଆର୍ଟିକିଲ୍' ନ ଲେଖିଲେ । ମନ, ଦେହ ସୁସ୍ଥ ରହିବ ନାହିଁ ଏସବୁ କାମ ନ କଲେ । ଏଥର ଉପରକୁ ଯିବା ।'

ଉପରେ ଅତି ସୁନ୍ଦର ସୁସଜ୍ଜିତ କୋଠରୀଟିଏ, ବେଶ୍ ବଡ । କୋଠରୀ ସଂଲଗ୍ନ ଗାଧୁଆଘର । ସେ ପାଖରେ ଖଣ୍ଡେ ପ୍ରଶସ୍ତ ବାଲକନି ।

'ଏଇଟି ବୋଧହୁଏ ତୋ ରୁମ୍ ? ସୁନ୍ଦର ସଜେଇ ରଖିଛୁ ।' ଶ୍ୱେତପଦ୍ମା ଖୁସିରେ କହିଲା ।

'ଆମ ପ୍ରିନ୍‌ସେସ୍‌ଙ୍କ ରୁମ୍ । ମୋର ସେପାଖ କର୍ଣ୍ଣର୍ ରୁମ୍ । ମୋ ରୁମ୍ ତୁ ନ ଦେଖିଲେ ଚଳିବ । ବେଶ୍ ଅସଜଡ଼ା ହୋଇ ପଡ଼ିଛି । ଆଜି ସମୟ ପାଇନାହିଁ । ସକାଳୁ ଏ ପର୍ଯ୍ୟନ୍ତ ଲାଗିଛି । ଲେଖା ପ୍ରସ୍ତୁତ କରି ପଠାଇବାକୁ ଥିଲା ତ । କମ୍ପ୍ୟୁଟର୍ ପାଖରେ ପଡ଼ିଥିଲି ।

ଶ୍ୱେତା, ସେଠି କ'ଣ ଦେଖୁଛୁ ? ତୋର ବିଶ୍ୱାସ ହଉନି ? ଲୋପାର ରୁମ୍ ସବୁବେଳେ ସଫା, ସଜଡ଼ା ହୋଇ ରହେ । ପିଲାଦିନରୁ ସେ ଅସନା, ଅପରିଷ୍କାର ଭଲ ପାଏ ନାହିଁ । ପାଠପଢ଼ା ସରିଲେ ମୋ ସାଙ୍ଗରେ ଲାଗିଯାଏ ଘର ଝାଡ଼ି ସଜାଡ଼ି ରଖିବାରେ, କାମ କରିବା ଲୋକମାନେ ଘର ଓଳେଇ, ପୋଛି ଚାଲିଯିବେ । ଅନ୍ୟସବୁ ହବ କିପରି ? ଆମେ ମା' ଝିଅ କରୁ ।

ଆରେ ଶ୍ୱେତା, କଥା କଥାକେ ତୋର ଆଖିରେ ଲୁହ । ତୋତେ ତେବେ ଉପରକୁ କାହିଁକି ଡାକି ଆଣିଲି ?'

- ନା, ମଂଜୁ, ଏ ମୋର ଖୁସିର ଲୁହ ।

କାନ୍ଥରେ ବୁକ୍ ସେଲଫ୍‌ମାନଙ୍କରେ ସାଇନ୍ସ, ଲିଟିରେଚର, କ୍ଲାସିକ୍ସ, ପୃଥିବୀର ଶ୍ରେଷ୍ଠ ବହିମାନ ସଂଗୃହୀତ ହୋଇ ସଜାହୋଇ ରଖାଯାଇଛି । ଅନ୍ୟ ପାଖରେ ପଢ଼ିବା ଟେବୁଲ୍, ଚେୟାର୍ । ଗୋଟିଏ କଣରେ ଆଧୁନିକ ଡିଜାଇନ୍‌ର ସୋଫାସେଟ୍, କାନ୍ଥର ଅନ୍ୟ ପାଖରେ ପିଆନୋ ଆଉ ସେଇ କାନ୍ଥର ତୈଳଚିତ୍ରଟି ସତେକି ଘରର ସୌନ୍ଦର୍ଯ୍ୟ ବୃଦ୍ଧି କରିଛି ।

କେତେ ସୁନ୍ଦର ହୋଇଛି ଲୋପା ପୁରସ୍କାର ନେଉଥିବା ଏହି ଫଟୋ ସବୁ ? ଟିକିନିଖି ସାଇତି ରଖିଛି ମଂଜୁଳା । କହିଲେ କହେ, 'ଭଲ କରି କିଛି କରିପାରେନା, ମୋର ଯେଉଁ ବିଶୃଙ୍ଖଳିତ ପ୍ରଫେସନ୍ ? ସମୟ ବି ସେମିତି । ମୋର ବା ଆଇଡିଆ କ'ଣ ଏସବୁ ଘର ସଜାସଜି କାମରେ ।

- ଥାଉ, ବେଶୀ କହନା ମଂଜୁ । ତୁ ଯାହା କରୁଚୁ କେହି କରିପାରିବେ ନାହିଁ ।

- ଏ ତ ମୋ ପାଇଁ ଏକ ଚାଲେଂଜ୍, ଶ୍ୱେତା । ଅନ୍ୟ କିଏ କ'ଣ କରୁ ବା ନ କରୁ । ମୁଁ ଯାହା ଚାହେଁ, ସେଥିପାଇଁ ମୋର ମନ, ପ୍ରାଣ ଦେଇ ଲାଗିବାକୁ ହୁଏ ମୋତେ ।

- ହଁ, ମଂଜୁ, ତୋ କାମରେ ଈଶ୍ୱରଙ୍କର ଆଶୀର୍ବାଦ ରହିଛି ।

ମଂଜୁ ହସୁଥାଏ ଶ୍ୱେତପଦ୍ମାର କଥା ଶୁଣି । ହୁଏତ ମନେ ମନେ କହୁଥାଏ, କର୍ତ୍ତବ୍ୟ ହିଁ ମୋର ଠାକୁର । ମୁଁ ସେଇ ପୂଜା, ଆରଧନା କରେ, ଶ୍ୱେତା ।

- ତୁ ସେଠି କ'ଣ ଦେଖୁଛୁ ? ଓଃ । ସେ ଫଟୋ । ଗିଏଲି, ପ୍ରଭାତଙ୍କର ଏହି ଫଟୋ ଉଠାଇବା ଚାଲେଞ୍ଜ୍ ମାନିବାକୁ ପଡିବ । ପ୍ରଫେସ୍‌ନାଲ୍ ମାନେ ହାରମାନିଯିବେ ।

ନିଜ ଆଖିକୁ ବିଶ୍ୱାସ କରି ପାରିଲା ନାହିଁ ଶ୍ୱେତପଦ୍ମା । ଏ କାହା ଘର ? ମଂଜୁର ନା ତା' ନିଜର ? ପ୍ରଭାତ, ଶ୍ୱେତପଦ୍ମା ଏବଂ ଅରୁଣ ସହ ଲୋପା । ପ୍ରଭାତ ଉଠେଇଥିବା ଲୋପାର ଏ ଫଟୋସବୁ କି ସୁନ୍ଦର ? ମାଉଣ୍ଟ୍ କରି ଇଟାଲିୟାନ୍ କାଚଫ୍ରେମ୍‌ରେ ବନ୍ଧା ହୋଇଛି ।

- ପ୍ରଭାତ ଫ୍ରେମିଂ କରି ଦେଇଛନ୍ତି । ଲୋପା କହିଲା, 'ମା' ଏଇ କାନ୍ଥ ଫଟୋ ପାଇଁ ସୁଟେବଲ୍ ପ୍ଲେସ୍ ।

ପାଖରେ ସଜ୍ଜା ହୋଇ ପଡିଥିବା ଦିଭାନ୍ ଖଣ୍ଡିକରେ କିଛି ସମୟ ଶାନ୍ତିରେ ଶୋଇ ଯିବାକୁ ସେଦିନ୍ ଇଚ୍ଛା ହେଲା ଶ୍ୱେତପଦ୍ମାର । ମନହେଲା, ଏଇଠି ଶୋଇ ସେ ଅପେକ୍ଷା କରିବ ଲୋପାକୁ । ସତକୁ ସତ କ୍ଳାନ୍ତିରେ ତା'ର ଆଖି ପତା ମାଡି ହୋଇ ଆସିଲା । ହୁଏତ ଲୋପା ଆସି କହିବ, 'ଆଣ୍ଟି, ତୁମେ ଆଜି ଯାଅନା । ରହିଯାଅ ମୋ ପାଖରେ ।'

ଟି.ଭି, ଭି.ସି.ଡି, ବହୁ ମୂଲ୍ୟର ମ୍ୟୁଜିକ୍ ସିଷ୍ଟମ୍, ସେପାଖ ଟେବୁଲ୍ ପାଖରେ କମ୍ପ୍ୟୁଟର୍ । ସବୁ ଖଞ୍ଜି ରଖିଛି ମଞ୍ଜୁ ତା' ଝିଅ ପାଇଁ ।

ପାଖ ବାଲକୋନିରେ ଗାର୍ଡନ୍ ଚେୟାର୍ ଦୁଇଖଣ୍ଡି ପଡିଛି । ଖଣ୍ଡିଏ ଟି-ପୟ, କିଛି ଫୁଲଗଛ, ଇନ୍‌ଡୋର୍ ପ୍ଲାଣ୍ଟ୍‌ସ ।

- ସୁନ୍ଦର ରୁଚି ମା' ଝିଅଙ୍କର । ଏଇୟା ଭାବୁଛୁ ତ ? ହସିଲା ମଂଜୁଳା । ଝିଅ ସବୁ ଆରମ୍ଭ କରେ । ମା'କୁ ଯତ୍ନ ନେବାକୁ ହୁଏ । ଝିଅ କାହିଁ ? ତା'ର ତ ନାହିଁ ନ ଥିବା କାମ ଲୋ, ଶ୍ୱେତା ।

ମଂଜୁଳା ହାତରେ ଟ୍ରେରେ ବାମ୍ପ ଉଠୁା ଚା'ର ବାସ୍ନା । ପ୍ଲେଟ୍‌ରେ ବିସ୍କୁଟ୍ କେତେଖଣ୍ଡ । ଶ୍ୱେତା ଅତି ଆଗ୍ରହରେ ଶୁଣୁଥାଏ ମଂଜୁଳାର କଥା । ତା' ହାତରୁ

ଟ୍ରେଟା ନେଇ ସେ ଟି-ପୟ ଉପରେ ରଖି ଦେଇ କହିଲା, 'ବସ୍ ମଂଜୁ, ତା' କଥା କିଛି କହତ ।'

'ହଁ ଶୁଣ୍, ତୋ ଡ୍ରାଇଭରକୁ ଚା' ଦେଇଛି । ସେ କହୁଥିଲା, ମେମ୍ ସାବ୍‌ଙ୍କର ପାର୍ଟି ଅଛି । ସାବ୍ ଅପେକ୍ଷା କରିଥିବେ ।'

'ଏବେ ସମୟ ହୋଇନାହିଁ । ଆଠଟାରେ ଡିନାର୍ । ମୁଁ ଆଉ ଅଧ ଘଣ୍ଟାଏ ବସି ପାରିବି ।'

'ଏଠି ବସି ଆମେ ମା' ଝିଅ ଦୁହେଁ ଚା' ପିଉ । ମୁଁ କ୍ଳାନ୍ତ ହୋଇ ଆସିଥାଏ । ସେ କହେ, ମା' ତୁମେ ବସ । ମୁଁ ଚା' କରି ଆଣେ । ଝିଅଟାର କେତେ ବୁଦ୍ଧି କହିଲୁ । ସେ ଜାଣିଥିବ, ସେଦିନ ମୁଁ ଭଲରେ ବ୍ରେକ୍‌ଫାଷ୍ଟ ଖାଇ ପାରିନଥିଲି । ବାହାରେ ମୁଁ ସେମିତି ଭଲ ପାଏ ନାହିଁ ବାଜେ ଖାଦ୍ୟ ଖାଇବାକୁ । ତୋତେ କ'ଣ କହିବି, ଶ୍ୱେତା, କେତେ ପ୍ରକାର ସ୍ନାକ୍ସ କରେ ସେ । ସତେ ଯେପରି ସେ କାମ ସବୁ ମିନିଟ୍‌କରେ ହୁଏ ତା' ହାତରେ ।

ଶ୍ୱେତା ଆଗ୍ରହରେ ଶୁଣୁଥାଏ ହସ ହସ ମୁହଁରେ । କୋଉ ହୋଟେଲ୍‌ରେ କେବେ ଖାଇଥିବ । ଏକ୍ସପେରିମେଣ୍ଟ୍ କରି ସେଇଦିନ ଜାଣିଯିବ । ସବୁ କରିପାରେ ଲୋ ସେ ଝିଅ । ମୋ ଦ୍ୱାରା ଏସବୁ ହୁଏ ନାହିଁ । ରାନ୍ଧିବା ଲୋକ ଯାହା ରୋଷେଇ କରି ଥୋଇ ଦେବ, ସେତିକିରେ ମୋତେ ସନ୍ତୁଷ୍ଟ ରହିବାକୁ ହୁଏ ।

ମଂଜୁଳା, ଶ୍ୱେତପଦ୍ମା ଦୁହେଁ ମନ ଖୋଲି ହସନ୍ତି ।

- ଶ୍ୱେତା, ଦେଖୁଛ ? ହେଇ ମଂଜୁ ଆସିଲେଣି । ଟାଇମ୍ ହେଲାଣି, ଫ୍ଲାଇଟ୍ ଆସିଯିବ । ଆସ, ସେ ପାଖକୁ ଯିବା ।

ସେମାନେ ଦୁହେଁ ସେ ପାଖକୁ ବାହାରିଲେ । ମଂଜୁଳା ପାଖକୁ ଆସି କହିଲା, ଶ୍ୱେତା, ମୁଁ ତୋତେ କେତେବେଳୁ ଖୋଜୁଛି ?

- ଦେଖୁନୁ କି କ୍ରାଉଡ୍ ? ମୋର ତ ମୁଣ୍ଡ ବିନ୍ଧିଲାଣି ?

- କ'ଣ ହେଲା ତୁମର ? ପ୍ରଭାତ ବ୍ୟସ୍ତ ହୋଇ ପଚାରିଦେଲେ ।

- ନା, କିଛି ନାହିଁ । ଚାଲ୍ ମଂଙ୍କୁ, ସାଡେ ଯିବା ।

ଶ୍ୱେତା ଭାବୁଥିଲା, କିଏ ରାଜନୈତିକ ନେତା ଆସୁଥିବେ । ଏତେ ଭିଡ ଏଆର୍‌ପୋର୍ଟରେ କେବେ ହୁଏ ନାହିଁ । ସମସ୍ତଙ୍କ ହାତରେ ଫୁଲ ତୋଡା, ଫୁଲ ମାଳ, ସତେକି ପୁଷ୍ପବୃଷ୍ଟି ହେଉଛି, ଫୁଲର ତୋରଣ ତିଆରି ହୋଇଛି । ଦେବକନ୍ୟା ଲୋପା ପାଇଁ ।

ଏଭଳି ଜନାକୀର୍ଣ୍ଣ ସ୍ଥାନରେ ଠିଆ ହୋଇ ରହିବା ଶ୍ୱେତା ପାଇଁ କଷ୍ଟକର ହେଉଥିଲା । ତଥାପି ଲୋପାକୁ ଅପେକ୍ଷା କରିଥିବାରୁ ସେ ଯେପରି ସବୁ ଭୁଲି ଯାଇଥିଲା ।

- ହେଇ ଦେଖ, ମୋ ଲୋପା ଆସୁଛି ।

- ହଁ, ହଁ, ଲୋପା ଆସିଗଲା । ସେ କେବଳ ଆମ ଲୋପା ନୁହେଁ । ସାରା ଭାରତର ସେ ଗର୍ବ, ଏ ଦେଶର ସମ୍ମାନ । ସାରା ବିଶ୍ୱବାସୀଙ୍କୁ ସେ ଚକିତ କରିଛି । ପ୍ରଭାତ ଅତି ଖୁସିରେ ଅନେକ କଥା କହିଥିଲେ । ଅନ୍ୟ ଦିନ ହୋଇଥିଲେ ସାଧାରଣ ଭାବରେ ସେ ଖୁସୀ ହୋଇଥାଆନ୍ତେ ।

ଦେଖ ଶ୍ୱେତା, କେତେ ଭିଡ ଏଠି । ସେମାନେ ଲୋପାକୁ ଦେଖିବା ପାଇଁ ଆସିଛନ୍ତି । ବିଭିନ୍ନ ଇନଷ୍ଟିଚ୍ୟୁଟ୍‌ର ହେଡ୍‌ମାନେ, ଫୁଲ ତୋଡା ନେଇ ଆସିଛନ୍ତି ତା' ପାଇଁ । ସମ୍ବର୍ଦ୍ଧନା ସଭାମାନ ଆୟୋଜନ କରିଛନ୍ତି । ଏମାନେ ସବୁ କ୍ୟାମେରାମ୍ୟାନ୍, ଟି.ଭିବାଲା, ଜର୍ଣ୍ଣାଲିଷ୍ଟ୍ ପତ୍ର ପତ୍ରିକା ଓ ଦୈନିକ ସଂବାଦପତ୍ରମାନଙ୍କର । ସେମାନେ ତାକୁ ଘେରିଗଲେଣି । ସେ ଆମ ପାଖକୁ ଆସିବ କ'ଣ ?

ସେମାନେ ତା'ର ଫଟୋ, ସାକ୍ଷାତକାର କାଲି ସକାଳର କାଗଜରେ ଛାପିବାକୁ ତତ୍‌ପର ।

- ହଁ, ଟି.ଭିର ବିଭିନ୍ନ ଚ୍ୟାନେଲ୍‌ରେ ଦୁଇଦିନ ହେଲା ଆମେ ଦେଖୁନେ ନା । ଶ୍ୱେତାର ଆନନ୍ଦ ମୁଖରିତ ସୁନ୍ଦର ମୁହଁଟିକୁ ମୁଗ୍ଧ ଦୃଷ୍ଟିରେ ଚାହିଁ ରହିଲେ ପ୍ରଭାତ । ଖୁସିରେ ସେ ଉତ୍ତର ଦେଲେ- ଜାଣିଛ ଶ୍ୱେତା, କାଲି ଦେଖିବ, ମୁଁ କେତେକ ଇଂରେଜୀ କାଗଜ ମଗାଇଛି । ଅନ୍ୟାନ୍ୟ ଇଂରେଜୀ ପତ୍ରପତ୍ରିକାମାନଙ୍କରେ ଲୋପା ସଂପର୍କରେ ଏବଂ ତା'ର ସାକ୍ଷାତକାର ଇତ୍ୟାଦି ନିଶ୍ଚୟ ପ୍ରକାଶ ପାଇବ ।

ଶ୍ୱେତପଦ୍ମା ବିହ୍ୱଳ ହୋଇ ଶୁଣୁଥିଲା । ପ୍ରଭାତ ତଥାପି କହି ଚାଲିଥିଲେ, 'ଏ କିଛି କମ୍ କଥା ନୁହଁ, ସ୍ପେସ୍ ସାଇନ୍ସରେ ଗବେଷଣା କରି ସାରା ଦେଶରୁ

ଏକମାତ୍ର ଲୋପାମୁଦ୍ରା ଶର୍ମା 'ନାସା' ଯିବା ପାଇଁ ସିଲେକ୍ଟ ହୋଇଛନ୍ତି । ପୁଅ, ଝିଅ ସମସ୍ତଙ୍କ ମଧ୍ୟରେ ସେ ଜଣେ ହିଁ ସ୍କଲାରସିପ୍ ପାଇ ବିଶେଷ ଟ୍ରେନିଂରେ ଯିବା ପାଇଁ ଯୋଗ୍ୟ ବିବେଚିତ ହୋଇଛି । ସେ ପୁଣି ଆମ ଓଡିଆ ଝିଅ । ଖୁସିର ମୁହୂର୍ତ୍ତରେ ହୁଏତ ପ୍ରଭାତ କହିବାକୁ ଚାହୁଁଥିଲେ 'ଝିଅମାନଙ୍କର ବାପା, ମା'ଙ୍କୁ ଏହା ଏକ ଉଚିତ ଶିକ୍ଷା । ଦେଖୁନ, କେଉଁ ଭାଗ୍ୟହୀନ ବାପା, ମା'ଙ୍କର କୁଷ୍ମାଣ୍ଡ ପୁଅମାନେ ଛତରା ହୋଇ ରାସ୍ତାରେ ବୁଲୁଛନ୍ତି, ଅଥଚ ବହୁ ପ୍ରଜ୍ଞାମୟୀଙ୍କ ଜୀବନ ଅବହେଳାର ବସ୍ତୁ ହୋଇଛି ଏଠି ।'

ଗୋଟାଏ ମୁହୂର୍ତ୍ତରେ ମନକୁ ଛୁଇଁଥିବା ଏମିତି କଥା ସବୁ ଶ୍ୱେତପଦ୍ମାକୁ ନ କହିବାକୁ ତାଙ୍କର ବିବେକ ତାଙ୍କୁ ସତର୍କ କରିଦେଲା । ନିଜକୁ ଧିକ୍କାର କରି ସେ କହିଲେ- ଭୁଲିଗଲୁ ତୁ, ପ୍ରଭାତ ? ଡାକ୍ତରଙ୍କ କ୍ଲିନିକ୍‌କୁ ଯାଇ ତୁ ନିଜେ ବାଧ କରୁଥିଲୁ, ଅପରେସନ୍‌ରେ ଯାହା ଟଙ୍କା ଖର୍ଚ୍ଚ ହେବ ହେଉ, ମୋ ସ୍ତ୍ରୀ ଗର୍ଭରେ ଥିବା କନ୍ୟା ଶିଶୁଟିକୁ ନଷ୍ଟ କରିଦିଅନ୍ତୁ, ଡକ୍ଟର ।

ତୋର ସେଇ ଅପକୀର୍ତ୍ତି ଶ୍ୱେତପଦ୍ମା ଏପର୍ଯ୍ୟନ୍ତ ଜାଣି ନାହିଁ । ଅବଶ୍ୟ ସମସ୍ତେ ଜାଣନ୍ତି ଶିଶୁଟି ମାତୃଗର୍ଭରୁ ମୃତ ହୋଇ ଜନ୍ମ ହୋଇଥିଲା ।

ସେମାନେ କହୁଥିଲେ, ବଂଚିଥିଲେ ଝିଅଟି ଅତି ସୁନ୍ଦରୀ ହୋଇଥାଆନ୍ତା । ଯାହା ତା'ର ଭାଗ୍ୟ ।

- ହେ କ'ଣ ହେଲା ? ଆଖି କାହିଁକି ନାଲି ଦେଖାଯାଉଛି ? ଶ୍ୱେତା ପ୍ରଭାତଙ୍କୁ ପଚାରୁଥିଲା ।

ପ୍ରଥମେ ହୁଏତ ପ୍ରଭାତ ଶ୍ୱେତାର କଥା ଶୁଣି ପାରି ନ ଥିଲେ । ପରେ ଶ୍ୱେତାକୁ ଚାହିଁ ହସିଲେ ସେ, 'ଆଖିରେ ଧୂଳି ପଡିଯାଇଥିବ ।'

- ଅଙ୍କଲ୍, ଆଣ୍ଟି, ଆପଣମାନେ ଏଇଠି ଅଛନ୍ତି । ଓଃ ମୋତେ ସେମାନେ ଆସିବାକୁ ଦେଉ ନାହାଁନ୍ତି । ମୁଁ ଆପଣମାନଙ୍କୁ ଦେଖୁଛି ଅଥଚ ଆସି ପାରୁନି ।

ଲୋପା ସେ ଦୁହିଁଙ୍କ ପାଦ ଛୁଇଁଲା । କ୍ୟାମେରାର କ୍ଲିକ୍ ଶବ୍ଦ, ଭିଡିଓ କ୍ୟାମେରାବାଲା ତା' ପଛରେ ଧାଇଁ ଆସିଛନ୍ତି । ଶ୍ୱେତପଦ୍ମା ତାକୁ କୋଳେଇ ନେଇ ଛାତିରେ ଚାପି ଧରିଛି । ଆଖିରୁ ଆନନ୍ଦାଶ୍ରୁ ବାଧା ମାନୁନାହିଁ । ଓଠରେ ଭାଷା ନାହିଁ ।

ପ୍ରଭାତ ଓ ଶ୍ୱେତପଦ୍ମା ସହ ସେ ହସି ହସି କଥାବାର୍ତ୍ତା କରିବାର ଫଟୋ ସବୁ ସଯତ୍ନେ ଉଠା ହେଉଥିଲା ।

'ତୋ ମା' ଏଠି ରହିବାର କଥା ।'

'ଆପଣମାନେ ବି ତ ମୋର ଗୁରୁଜନ, ଅଙ୍କଲ୍, ଆଣ୍ଟି ।' ଲୋପା ଅତ୍ୟନ୍ତ ଶ୍ରଦ୍ଧାରେ ଉତ୍ତର ଦେଲା ।

ପ୍ରଭାତ ଲୋପାଠାରୁ ଲଗେଜ ସ୍ଲିପ୍ ନେଇ ଜଣେ ବନ୍ଧୁଙ୍କୁ ଅନୁରୋଧ କଲେ, ତା'ର ଏକମାତ୍ର ବଡ ସୁଟ୍‌କେଶ୍‌ଟା ଏପାଖକୁ ପଠେଇ ଦେବାକୁ ।

ଏ ମଧ୍ୟରେ ମଂଜୁ ଶ୍ୱେତପଦ୍ମା ପାଖରେ ପହଞ୍ଚି ସାରିଥିଲା । ଦୁହେଁ ଅପେକ୍ଷା କରିଥିଲେ ଲୋପାକୁ । ସେତେବେଳେ ଲୋପାମୁଦ୍ରା ଶର୍ମା ଭାରତର ଏକ ପ୍ରତିଷ୍ଠିତ ଇଂରେଜୀ ପତ୍ରିକାର ସହକାରୀ ସଂପାଦକଙ୍କୁ ସାକ୍ଷାତକାର ଦେବାରେ ବ୍ୟସ୍ତ ଥିଲା । ପୂର୍ବରୁ ପ୍ରସ୍ତୁତ କରି ରଖିଥିବା କିଛି ଜେରକ୍ସ କାଗଜ, ତା'ର ସଫଳତାର ପ୍ରମାଣପତ୍ର କୁହାଯାଇପାରେ, ସେମାନଙ୍କ ହାତକୁ ବଢ଼ାଇଦେଇ ଲୋପା କହିଲା,

'ଆଶା କରୁଛି, ଆପଣମାନଙ୍କର ମୋ ସହ କଥାବାର୍ତ୍ତା ଶେଷ ହୋଇଛି ।'

'ଆଉ ଦୁଇ ମିନିଟ୍, ମ୍ୟାଡମ୍ ।'

ଅନ୍ୟ ପତ୍ରକାରମାନଙ୍କୁ ମନା କରିଦେଲା ଲୋପା । ସେମାନଙ୍କ ଅନୁରୋଧ ଆଦୌ ରଖିପାରିବନି ସେ ଏବେ, ତା' ସ୍ପଷ୍ଟ ଭାବରେ ଜଣାଇ ଦେଇ କହିଲା,

'ଦେଖନ୍ତୁ, ମୁଁ ଦୁଇରାତି ଶୋଇନାହିଁ ଭଲରେ । ଆଇ ଫିଲ୍ ସ୍ଲିପି ନାଓ ।'

ଦୂରରୁ ଲୋପାକୁ ଚାହିଁ ହସିଲା ମଂଜୁଳା ।

'ଦେଖୁଛୁ ଶ୍ୱେତା, ଏଥର ମୋର ଛୁଟି । ମୋ କାମ ଶେଷ ହେଲା ।'

ଶ୍ୱେତପଦ୍ମା କିଛି ନ ବୁଝିବା ଦୃଷ୍ଟିରେ ଚାହିଁ ରହିଲା ମଂଜୁଳାକୁ । ନିଜକୁ ବ୍ୟସ୍ତ ହୋଇ ପଚାରିଲା ଶ୍ୱେତପଦ୍ମା । ଏପରି ଏକ ଆନନ୍ଦମୟ ମୁହୂର୍ତ୍ତରେ ତୋର ସବୁ ଶକ୍ତି ତୁ ହରେଇ ଦେଇ ଏପରି ଅବସନ୍ନ ହୋଇ ପଡୁଛୁ କାହିଁକି ?

ସେ ଖୁସୀ ଅଛି, ହସୁଛି । ଏ ଝିଅଟିକୁ ପାଖରେ ପାଇ ପୃଥିବୀର ସୌନ୍ଦର୍ଯ୍ୟ ତା' ପାଖରେ ଯେପରି ଦ୍ୱିଗୁଣିତ ହୋଇ ଉଠୁଛି । ତଥାପି ଏ କ'ଣ ?

ପ୍ରଭାତ ବି 'ଆମ ଲୋପା', 'ଆମ ଲୋପା' କହି ଆନନ୍ଦରେ ଅଧୀର

ହୋଇଉଠୁଛନ୍ତି । ମାତ୍ର ବିମାନଘାଟିର ପରିସର ମଧ୍ୟରୁ ଫେରିଗଲେ ନିଜ କାମ ମଧ୍ୟରେ ସେ ଏପରି ହଜିଯିବେ, ଏସବୁ କଥା ତାଙ୍କୁ ଛୁଇଁ ପାରିବ ନାହିଁ ।

ବିଚରା ଭାଗ୍ୟହୀନ ମଣିଷଟି !

ମଂଜୁ ବାହାରୁଛି, ଲୋପାକୁ ନେଇ ଫେରିଯିବ ସେ ତା' ଘରକୁ । ଦୁଇବର୍ଷର ସଂଚିତ ଗଳ୍ପରେ ମା' ଝିଅଙ୍କର ବିନିଦ୍ର ରଜନୀ ବିତିଯିବ ।

ଶ୍ୱେତପଦ୍ମା, ପ୍ରଭାତ ଏକା ହୋଇଯିବେ ପୂର୍ବଭଳି । ପୁଣି ସେହି ବିଷଣ୍ଣ ଭାବ ଫେରିଆସିଲା ଶ୍ୱେତପଦ୍ମା ପାଖକୁ ।

'ଆମେ ଆସୁଛୁ । ଶୀଘ୍ର ପୁଣି ଦେଖା ହବ, ଶ୍ୱେତା ।' ମଂଜୁଳା ହସି ହସି ଝିଅକୁ ନେଇ ବାହାରିଲା ।

'ଏ କ'ଣ ମଂଜୁ ? କୁଆଡେ ବାହାରିଲ ? ଘରକୁ ଆସ ଆଗ, ଯିବ ତ ବ୍ୟସ୍ତ କାହିଁକି ? ଆଜି ପୁଣି ତୁମର କି କାମ ? ଚାଲ, ଏକାଠି ସମସ୍ତେ ଖାଇବା । ରାତି ବିଳମ୍ବ ହେଲେ ଆମେ ଦୁହେଁ ଯାଇ ତୁମକୁ ଛାଡିଦେଇ ଆସିବୁ ।'

ଶ୍ୱେତାର ମୁହଁ ଉଜ୍ଜ୍ୱଳ ହୋଇଉଠିଲା । ମଂଜୁଳାକୁ ଲୋପା ଚାହିଁଲା, 'ଚାଲ ମା', ଅନେକ ଦିନ ହେଲା ଅଙ୍କଲ୍, ଆଣ୍ଟିଙ୍କ ଘରକୁ ଆସିନି । ଆଜି ମୁଁ ଆଣ୍ଟିଙ୍କ ସଙ୍ଗେ ଟାଇମ୍ ସ୍ପେଣ୍ଡ୍ କରିବି । ତୁମେ କିନ୍ତୁ ଆଣ୍ଟିଙ୍କ ସଙ୍ଗେ କଥା ଗପି ପାରିବ ନାହିଁ । ଦୁହେଁ ମିଶିଲେ ତୁମର କେତେ କଥା ଯେ ଥାଏ ।'

- ଦେଖୁଛୁ ଶ୍ୱେତା, ଏ ଝିଅକୁ ?

- ସେ ତ ଠିକ୍ କହୁଛି । ପ୍ରଭାତ ହସି ହସି କହିଲେ ।

ଲୋପା, ପ୍ରଭାତଙ୍କ ଅଜାଣତରେ ଶ୍ୱେତପଦ୍ମା, ମଂଜୁଳା ପରସ୍ପରକୁ ଥରେ ଚାହିଁ ନେଇ ଆଖିରେ କିଛି କଥାବାର୍ତ୍ତା କରିବା ଭଳି ମନେହେଲା ।

ଲୋପାର ବାରମ୍ବାର ଫୋନ୍ ଆସୁଛି । ଯେତେ ଯାହା ଚାହିଁଲେ ବି ଶ୍ୱେତପଦ୍ମା, ମଂଜୁଳାଙ୍କୁ ଏକା ରଖିଦେଇ ସେ ବ୍ୟସ୍ତ ରହୁଛି ଅନ୍ୟମାନଙ୍କ ସହ ଫୋନ୍‌ରେ କଥାବାର୍ତ୍ତା କରିବାରେ ।

ଶେଷକୁ ବ୍ୟସ୍ତ ହୋଇ ସେ କହେ, 'ମା, ଦେଖୁଚୁ, ଏମାନେ ମୋତେ

ଶାନ୍ତିରେ ରଖେଇ ଦେବେ ନାହିଁ । ଫୋନ୍‌ଟା ଅଫ୍ କରିଦେଲେ ବି ଠିକ୍ ହେବ ନାହିଁ ।'

ଶ୍ୱେତପଦ୍ମା ଲୋପା ପାଖକୁ ଆସି ତା'ର ମୁଣ୍ଡ ଆଉଁସି ଦେଇ କହିଲା, 'ତୁ ଚାଲ୍ ମା', କ'ଣ ଟିକେ ଖାଇଦେଇ ବିଶ୍ରାମ ନେ । ତୋର ଫୋନ୍ ଆସିଲେ ମୁଁ କହିବି ତୁ କ୍ଲାନ୍ତ ହୋଇ ଶୋଇ ଯାଇଛୁ ।'

'ଠିକ୍ ଅଛି, ଆଣ୍ଟି, ସେଇୟା କରୁଛି ।'

ଅରୁଣର ବିବାହ । ଖୁବ୍ ବେଶୀ ହେଲେ ହାତରେ ପନ୍ଦର ଦିନ ସମୟ । ପ୍ରଭାତ କହନ୍ତି, 'ପୁଅ ବାହାଘରରେ କାମ କ'ଣ ?' ସବୁତକ ବ୍ୟସ୍ତତା ଝିଅ ପାଇଁ । ଅନେକ କଥା କହିବାକୁ ଚାହୁଁଥିଲେ ସେ ଝିଅ ବିବାହ ସଂପର୍କରେ, କ'ଣ ଭାବି ନିରବ ହେଇଗଲେ ।

ଅଧା ପାଖାପାଖି କାର୍ଡ ବଣ୍ଟା ସରିଛି, ବାହାରକୁ ଯାହା ଯିବାକଥା ତାକୁ ପଠେଇ ଦେଇଛନ୍ତି ପ୍ରଭାତ । ସମସ୍ତଙ୍କୁ ତ ନିଜେ ଯାଇ ଡାକି ହବ ନାହିଁ । କାର୍ଡରେ ନିଜ ହାତ ଲେଖା ଦୁଇଧାଡି ଛପା ହୋଇଛି ।

: ବନ୍ଧୁ ଦୁଃଖିତ, ନିଜେ ଆପଣଙ୍କ ପାଖକୁ ଯାଇ ନିମନ୍ତ୍ରଣ କରି ପାରୁନାହିଁ । କ୍ଷମା ଦେବେ । ନିଶ୍ଚୟ ଆସିବେ ।...

ଏତେ ଦିନ ପରେ ଶ୍ୱେତପଦ୍ମାର ମୁହଁ ହସ ହସ ଦେଖାଯାଉଛି ।

'ଭଲ ନିମନ୍ତ୍ରଣ ପତ୍ର ଛାପିଛ ? ବେଶ୍ ଆନ୍ତରିକତା ସହ ତୁମ ହାତଲେଖାରେ ଜଣାଇ ଦେଇଛ । ଏ ବନ୍ଧୁମାନେ ଲଣ୍ଡନ୍, ଆମେରିକାରୁ ଆସିବେ ତ ?'

'ତୁମେ କ'ଣ ଏମିତି ପିଲାଙ୍କ ପରି ହେଉଛ ? ତୁମର ପ୍ରମୋସନ୍ ହେଲା, ତୁମେ ଶାଶୂ ହେଲ ଏବେ । କେତେ କାମ ରହିଛି ନା ଯାଙ୍କୁ ଥଟ୍ଟା ଲାଗିଛି ?' ପ୍ରଭାତ କୃତ୍ରିମ ରାଗ ଦେଖାଇଲେ ।

'ଯାଅ, ଯାଅ, ତୁମେ କାମ କର । ମୋର ଗୋଟିଏ ପୁଅର ବାହାଘର ।

ମୁଁ ଟିକେ ଖୁସୀ ହେଲେ ତୁମେ ହିଂସା କରୁଛ ? ରୁହ, ଏବେ ବହୁତ କାମ ଲଦିଦେବି ଆଜି । ଅଫିସ୍‌ରୁ ଶୀଘ୍ର ଆସ ତ ।'

'ହେଲା ହେଲା, ଯାହା କହିବ ।' କହୁ କହୁ ତର ତର ହୋଇ ଅଫିସ୍ ବାହାରିଗଲେ ପ୍ରଭାତ ।

ପ୍ରଭାତ ଯେତେ ସହଜ ଭାବରେ ଉତ୍ତର ଦେଲେ ମଧ୍ୟ ସେ ଜାଣନ୍ତି, ଭାରତର ସବୁ ରାଜ୍ୟରେ ତାଙ୍କର ବନ୍ଧୁମାନେ ରହନ୍ତି । ଦେଶ ବାହାରେ ମଧ୍ୟ ଘନିଷ୍ଠ କେତେଜଣଙ୍କୁ ନିମନ୍ତ୍ରଣ କରିବାକୁ ହେବ । ଅନ୍ୟାନ୍ୟ ବ୍ୟକ୍ତି ବିଶେଷ ଯେଉଁମାନଙ୍କ ସହ ବ୍ୟବସାୟିକ ସଂପର୍କ ସେମାନଙ୍କୁ ଏବଂ ଅନ୍ୟ ପରିଚିତମାନଙ୍କୁ ପାର୍ଟି ଦେବାକୁ ତ ହେବ । ମାତ୍ର ଅନ୍ତରଙ୍ଗମାନଙ୍କ ସହ ସେମାନଙ୍କୁ ଡାକିବା ବୋଧହୁଏ ଠିକ୍ ହେବ ନାହିଁ । ଦୁହେଁ ଏ ବିଷୟରେ ଏକମତ ହେଲେ ।

ଶ୍ୱେତପଦ୍ମା, ପ୍ରଭାତ । ଦୁହେଁ ମିଶି ବେଶ୍ କିଛି ଦିନ ପୂର୍ବରୁ ଏ ସମସ୍ତଙ୍କ ନାମତାଲିକା ପ୍ରସ୍ତୁତ କରିଛନ୍ତି । କେଉଁଠି କାହାର ନାମ ବାଦ୍ ପଡିଗଲେ ପରେ ଏ ଦୁହିଁଙ୍କ ମନ ଖରାପ ହେବ । ତେଣୁ ଏ କାମଟି ବହୁପୂର୍ବରୁ ସ୍ଥିର ଚିତ୍ତରେ ବିଚାର କରି କରିଛନ୍ତି ଦୁହେଁ । ସବୁ ବନ୍ଧୁବାନ୍ଧବଙ୍କୁ ଜଣାଇଥିଲେ ମଙ୍ଗଳପାକ ଭୋଜିରେ ଯେପରି ନିଶ୍ଚିତ ଭାବରେ ଉପସ୍ଥିତ ହେବେ ସେମାନେ ।

ବିବାହ ଠିକ୍ ହେବା ପରେ ପରେ ଶ୍ୱେତପଦ୍ମା ବୋହୂ ପାଇଁ ଗହଣା ଦୁଇ ସେଟ୍ କରାଇ ରଖିଛି । ଏହା ବ୍ୟତୀତ ନିଜ ଗହଣାରୁ କିଛି ଖଣ୍ଡିଏ ସୁଦୃଶ୍ୟ ସିଲ୍କକନାର କୁଶନ୍ ଦିଆ ହୋଇଥିବା, କାରୁକାର୍ଯ୍ୟକରା ଚନ୍ଦନକାଠର ବାକ୍ସରେ ସଜାଡି ରଖିଛି । ସେହିଭଳି ଅନ୍ୟ ବାକ୍ସଟିରେ ମଧ୍ୟ ଭାଗ କରିବା ଭଳି ସେ ରଖିଦେଇଛି ବ୍ୟାଙ୍କ୍‌ର ଲକ୍‌ରେ ।

ଥରେ ବ୍ୟାଙ୍କ୍‌କୁ ତା' ସାଙ୍ଗରେ ଯାଇଥିଲେ ପ୍ରଭାତ । ଏସବୁ କାରବାର ଦେଖି କହିଲେ,

'ଏ କ'ଣ ? ବୋହୂ ସାଙ୍ଗରେ ଭାଗକରୁଛ କି ?'

ଶ୍ୱେତପଦ୍ମା ଉତ୍ତର ଦେଲା ନାହିଁ । ନିରବ ଦୃଷ୍ଟିରେ ତାଙ୍କୁ ଚାହିଁ ରହିଲା । ପ୍ରଭାତଙ୍କର ମନେ ପଡିଲା, ଥରେ ଜଣେ ବନ୍ଧୁ କହିଥିଲେ,

'କେବେହେଲେ ସ୍ତ୍ରୀଲୋକମାନଙ୍କୁ ସେମାନଙ୍କ ବୟସ ସଂପର୍କରେ ପଚାରିବ ନାହିଁ ଏବଂ ସେମାନେ ସାଇତି ରଖିଥିବା ସେମାନଙ୍କର ଅଳଙ୍କାର ବିଷୟରେ ଆଦୌ ଆଗ୍ରହୀ ହେବ ନାହିଁ ।'

ସତକଥା, ଏ ଆପ୍ତବାକ୍ୟ ସେ ଭୁଲିଗଲେ କାହିଁକି ? ଅବଶ୍ୟ ନିଜକୁ ମାନିବା ଭଳି ଶାଢ଼ି ଖଣ୍ଡିଏ ସହ ଅଳଙ୍କାର ସେଟ୍‌ଟିଏ ପିନ୍ଧି ଶ୍ୱେତପଦ୍ମା ଯେବେ ତାଙ୍କ ସହ ପାର୍ଟି କିମ୍ବା କେଉଁ ବିଶେଷ ଉତ୍ସବକୁ ବାହାରେ, କେବେ କେବେ ତାକୁ ଚାହିଁ ପ୍ରଭାତ କହନ୍ତି,

'ଆରେ ବାବା ତୁମ ସାଙ୍ଗରେ ମୁଁ ଗଲେ ଆଜି ବିପଦ ଅଛି ।'

'ହେ, ଏମିତି ସବୁ କଥା କାହିଁକି କୁହ ?'

'ପଚାର ତ କାହାକୁ ? କହିବେ, ଏ ବୁଢ଼ାଟା ଏ ଝିଅକୁ କୋଉଠୁ ଉଠେଇ ଆଣିଛି । ତା'ପରେ ତ ମାଡ ହେଇଯିବ ମୋ ଉପରେ ।'

'ଥାଉ, ମୋତେ ସବୁବେଳେ ଥଟ୍ଟା ଭଲ ଲାଗେ ନାହିଁ ।' ଶ୍ୱେତପଦ୍ମା ସତକୁ ସତ ରାଗିଯାଏ ।

ପ୍ରଭାତ 'ସରି' ନ କହିବା ଯାଏ ରକ୍ଷା ନ ଥାଏ । କିନ୍ତୁ ସେ ଜାଣନ୍ତି, ଶ୍ୱେତପଦ୍ମାର ସ୍ଥାନରେ ଆଉଜଣେ କେହିଥିଲେ ଏ ପ୍ରଶଂସାରେ ଆନନ୍ଦିତ ହୋଇ ଉଠନ୍ତା ।

ଶ୍ୱେତପଦ୍ମା ଭଳି ସୁନ୍ଦରୀ, ସୁଗୁଣବତୀ ପତ୍ନୀ ପାଇ ବାସ୍ତବିକ ପ୍ରଭାତ ନିଜକୁ ଭାଗ୍ୟବାନ ମନେକରନ୍ତି । ଘର ପରିବାର ବିଷୟ ସେ କ'ଣ ବୁଝନ୍ତି, କ'ଣ ଜାଣନ୍ତି ? ସବୁ କରେ ଶ୍ୱେତପଦ୍ମା । ସାତ ଭଉଣୀଙ୍କ ଘରୁ କାହାର ହେଲେ ଯିବା ଆସିବା ଲାଗି ରହେ । ବାହାଘର, ବ୍ରତଘର, ଜନ୍ମଦିନ, ବନ୍ଧୁ, କୁଣିଆଙ୍କ ଖବର ବୁଝିବା, ଭଣଜା, ଭାଣିଜୀଙ୍କ ମୁହଁଫୁଲାକୁ ଜଗିବା, କାହାର କେତେ ଫର୍ମାସ୍ ମାମୁ, ମାଈଁ ପାଖରେ । ଶ୍ୱେତପଦ୍ମା ତାଙ୍କୁ ନ କହିବା ଯାଏ ସେ ମୁଣ୍ଡ ଖେଳାନ୍ତି ନାହିଁ ।

ବୋହୂ ପାଇଁ ରଖିଥିବା ଗହଣା ସବୁକୁ ନିଜେ କେବେ ଦେଖି ଖୁବ୍ ଖୁସୀ ହୁଏ ଶ୍ୱେତପଦ୍ମା । ଏବଂ ତା' ପାଇଁ ବାଛି ବାଛି ରଖିଛି ସୁନ୍ଦର ଶାଢ଼ି କେତେଖଣ୍ଡି । ଅରୁଣର ଶୋଇବା ଘର ସେ ନିଜ ରୁଚିରେ ସଜାଇବ । ତଥାପି ଘର ରଙ୍ଗ ହେବ । ଝରକା, କବାଟ, ଖଟ, ଚେୟାର, ଟେବୁଲ୍ ପଲିସ୍ ହେବ, କେଉଁଟା ରଙ୍ଗ ହେବ । ନୂଆ ସୋଫାସେଟ୍‌ଟା ସେଇ ଘରକୁ ଉଠାହେଇ ଯାଉ । ଅନ୍ତତଃ ଗୋଟିଏ, ଦୁଇଟି ରୁମ୍ ପ୍ରଥମେ ଠିକ୍ ହେଇ ରହୁ । ନା - ତା'କଲେ କ'ଣ ହେବ ?

ସବୁ କାମ ପ୍ରାୟ ଏକା ସାଙ୍ଗରେ ଚାଲୁଛି । ସାରା ଘରକୁ ଏକ ନୂତନ ଚମକ ଦେବାକୁ ଲାଗିପଡିଛି ଶ୍ୱେତପଦ୍ମା । ପ୍ରତିଦିନ ସନ୍ଧ୍ୟାରେ ପ୍ରଭାତ ଫ୍ୟାକ୍ଟରୀ

ଅଫିସ୍‌ରୁ ଫେରି ସେଦିନ କେତେ କାମ ହେଲା, ବୁଲି ଦେଖନ୍ତି । ସେ ଦେଖିବାରେ ନ ଥାଏ କିଛି ଦାୟିତ୍ୱ । ଖୁସି ହେବା, ପତ୍ନୀକୁ ତାରିଫ୍ କରିବା ବ୍ୟତୀତ ଏ ସମସ୍ତ ବିଷୟରେ ଅଧିକ କିଛି କରିବାର ନ ଥାଏ ତାଙ୍କର । ଶ୍ୱେତପଦ୍ମାର ସମସ୍ତ ଆୟୋଜନ ଶୃଙ୍ଖଳିତ ଭାବରେ ଚାଲିଥାଏ ।

ଅରୁଣ ଜାଣି ଜାଣି ବିଳମ୍ୱରେ ଆସିବ ଜଣାଇଦେଇଛି । 'ମୋର ତ ମା', ଘରେ କିଛି କରିବାର ନାହିଁ । ବାପା କହୁଥିଲେ, ତୁମେ ସବୁ ଆରେଂଜମେଣ୍ଟ୍ କରିସାରିଛ । ମୋତେ ବରଂ କୁହ ଏଠାରୁ ଯଦି କିଛି ନେବାର ଥାଏ, ମୁଁ କିଣାକିଣି କରି ନେଇଯିବି ।'

କିଛିଦିନ ତଳେ ଅରୁଣ ଫୋନ୍‌ରେ କଥାବାର୍ତ୍ତା କରିଥିଲା । ଶ୍ୱେତପଦ୍ମା ପୁଅକୁ କେତେକ ଦାୟିତ୍ୱ ଦେଇଛି । ସେ ଜାଣେ ଅରୁଣ ଠିକ୍ ବୁଝେ ମା' କ'ଣ ଚାହେଁ । ତା'ର ରୁଚି ମଧ ଖୁବ୍ ଭଲ । ତେଣୁ ଭାବିବାର କିଛି ନାହିଁ । ପ୍ରାୟ ପ୍ରତିଦିନ ଅରୁଣ ଶ୍ୱେତପଦ୍ମା ଓ ପ୍ରଭାତଙ୍କ ସହ ଫୋନ୍‌ରେ କଥାବାର୍ତ୍ତା କରେ । ମା' ସହ କଥା କହିବା ସମୟରେ ଅନିନ୍ଦ୍ୟା ସଂପର୍କରେ କିଛି କହିବାକୁ ଭୁଲେ ନାହିଁ । ଶ୍ୱେତପଦ୍ମା ଖୁସୀ ହୁଏ । ଫୋନ୍ ରଖି ଇଷ୍ଟଦେବଙ୍କୁ ପ୍ରଣତି ଜଣାଇ ମନେ ମନେ କହେ, 'ପ୍ରଭୁ, ଭଲରେ ଏ ସମସ୍ତ କାର୍ଯ୍ୟ ସମାପନ ହେଉ । ମୋ ପିଲାଙ୍କୁ, ମୋ ପରିବାରକୁ ଚିର ସୁଖ, ଶାନ୍ତିରେ ରଖିଥାଅ ପ୍ରଭୁ ।'

ଏ ବେଳରେ ନଣନ୍ଦମାନଙ୍କୁ ଶୀଘ୍ର ଆସିବା ପାଇଁ କହିବା ଅର୍ଥ ହଇରାଣରେ ପଡିବା, ଏକଥା ପ୍ରଭାତଙ୍କୁ ବୁଝେଇ ଦେଇଛି ଶ୍ୱେତପଦ୍ମା । ସେମାନେ ସାହାଯ୍ୟ ଯାହା କରିବେ, ତା'ଠାରୁ ଅଧିକ ସେମାନଙ୍କ ଖବର ବୁଝିବାକୁ ହେବ ।

'ତା' ଆବଶ୍ୟ ସତ । କିନ୍ତୁ କ'ଣ କରିବା ? ଅନ୍ତତଃ ବିବାହର ଦିନେ ଦୁଇଦିନ ପୂର୍ବରୁ ସେମାନେ ଆସନ୍ତୁ ।' ପ୍ରଭାତ ଏକ ମତ ହେଲେ ଶ୍ୱେତପଦ୍ମାର ପ୍ରସ୍ତାବରେ । ଭଉଣୀ, ଭିଣୋଇମାନଙ୍କୁ ଗୁଆ, ନିମନ୍ତ୍ରଣ ପଠାଇବା ପୂର୍ବରୁ ଫୋନ୍‌ରେ ସହଜ ଭାବରେ ସେ ପଚାରିଲେ,

'କେବେ ସବୁ ଆସିବା ପାଇଁ ସ୍ଥିର କରିଛ ?'

'ବହୁତ ପୂର୍ବରୁ ତ ଆସି ହବ ନାହିଁ । ଏ ପାଖରେ ଅଫିସ୍‌ରୁ ଛୁଟି ମିଳିବ ନାହିଁ ଏତେ ବେଶୀ । ପିଲାଙ୍କର ପରୀକ୍ଷା ଅଛି । ଅରୁଣର ବିବାହରେ ତ କମ୍‌ରେ ଚାରିଦିନ ରହିବାକୁ ହେବ । ଭାଗ୍ୟକୁ ଶନିବାର, ରବିବାରକୁ ମିଶାଇ ଚାରି, ପାଞ୍ଚଦିନ ଆପଣମାନଙ୍କ ସଙ୍ଗେ ବିତାଇ ପାରିବୁ ଭାବୁଛୁ ।'

ଅନ୍ୟ ସମସ୍ତଙ୍କର ମତ ପ୍ରାୟ ଏକାଭଳି । ଅତ୍ୟନ୍ତ କାମର ଝିଅ ନବନୀତା କହେ, 'ନୂଆବୋଉ, ଯଦି କିଛି କାମ କରିବାର ଅଛି, ମୋତେ କୁହ । ମୁଁ ଏକା ଆସିବି ସାତଦିନ ପୂର୍ବରୁ । ଏମାନେ କିନ୍ତୁ ବାହାଘରର ପୂର୍ବଦିନ ସନ୍ଧ୍ୟାରେ ପହଞ୍ଚିବେ ।'

ଶ୍ୱେତପଦ୍ମା କହେ, 'ତୁମକୁ ହଇରାଣ କରିବାକୁ ଚାହେଁ ନାହିଁ । ମାତ୍ର ଯଦି ତୁମେ ଆସିପାରିବ, ମୁଁ ଖୁସୀ ହେବି ।'

ନବନୀତା ଖୁସୀ ହେଇ କହେ, 'ନିଶ୍ଚୟ ଆସିବି ଶୀଘ୍ର । ତୁମ ପାଖେ ପାଖେ ରହି ଯାହା କହିବ କରିବି । ମୋ ବଡ ନଣନ୍ଦ, ଯିଏ ଗାଁରେ ରହନ୍ତି, ଆସିଛନ୍ତି । ଅତି କାମର ଲୋକ । ଏ ଘର ସେ ସଂଭାଳି ନେବେ । ସେ ଆସିଲେ ମୁଁ ନିଶ୍ଚିନ୍ତ । ମୋ ପିଲାଏ ତାଙ୍କୁ ଭାରି ଭଲ ପାଆନ୍ତି ।'

ଲାଲିମା କହେ, 'ନୂଆବୋଉ, ଆମେ ସମସ୍ତେ ଫୋନ୍‌ରେ କଥାବାର୍ତ୍ତା କରିଥିଲୁ । ମଙ୍ଗଳପାକ ଦିନ ସମସ୍ତେ ପହଞ୍ଚିବୁ । ଏଠିକା ଜଂଜାଳ ସବୁ ତୁମେ ତ ଜାଣ । ତୁମର ତ ଏବେ ସାନ ପିଲା ନାହାଁନ୍ତି । ତଥାପି ବୁଝୁଥିବ । ଏ ଦୁଇ ପିଲାଙ୍କ ପାଠ ବନ୍ଦ କରି, ୟାଙ୍କର ବିଜିନେସ୍ ଟୁର୍ ବଂନ୍ଦ କରାଇ, ଅଯଥାରେ ବହୁ ପୂର୍ବରୁ ପହଞ୍ଚି ତୁମକୁ ହଇରାଣ କାହିଁକି କରିବୁ ? ମୁଁ ଭାବିଛି ବିବାହ ପୂର୍ବ ସନ୍ଧ୍ୟାରେ ସମସ୍ତେ ପହଞ୍ଚିଲେ ଭଲ । ନବନୀତା ତ ତୁମ ପାଖରେ ଥିବ ।'

ଶ୍ୱେତପଦ୍ମାର କହିବାର କିଛି ନାହିଁ ।

ରାତି ପାହିଲେ ଅରୁଣ ବର ହୋଇ ବାହାରିବ । ସମସ୍ତେ ଆସିଲେ । ଘରେ ଆନନ୍ଦର ମହୋତ୍ସବ । ହସ, ଖୁସି, କଥାବାର୍ତ୍ତାର ସ୍ରୋତ ଲମ୍ବି ଯାଉଛି । ଏମିତି ଖୁସିର ଦିନ ସତେକି ଏଇ ପ୍ରଥମ ଥର ପାଇଁ ଏ ଘରକୁ ଅକସ୍ମାତ୍ ପଶି ଆସିଛି ।

ଅନେକ କାମର ତାଲିକା ଶ୍ୱେତପଦ୍ମା ପାଖରେ । ସେ ମନେ ନ ପକାଇଲେ ପ୍ରଭାତ କିଛି କରିପାରୁ ନାହାଁନ୍ତି । କାମ କରିବା ଲୋକଙ୍କର ଅଭାବ ନାହିଁ । ମାତ୍ର ମନେ ହେଉଛି ଯେପରି ସବୁ ଦାୟିତ୍ୱର ରଜ୍ଜୁ ଶ୍ୱେତପଦ୍ମା ହାତରେ । ଛୋଟ ନୋଟ୍ ବୁକ୍, ପେନ୍‌ଟିଏ ଧରିଛି ସେ । ସ୍ଥିର ଚିତ୍ତରେ ଗୋଟିଏ ପରେ ଗୋଟିଏ ଶୃଙ୍ଖଳିତ ଭାବରେ କରାଇ ନେଉଛି । ଏସବୁ ସତ୍ତ୍ୱେ ମନରେ କେଉଁଠି ଅଭାବ ରହିଯାଉଛି ।

ସେ ଆସି ନାହିଁ । ସମସ୍ତେ ଆସିଲେ ଏପରିକି ମଂଜୁ ମଧ ଆସି ପହଞ୍ଚିଛି । ଅଥଚ ଲୋପା ?

ଏତେ କରି କହିଥିଲା ଶ୍ୱେତପଦ୍ମା, 'ଦେଖ୍ ମା', ସେଇ ଚାରୋଟି ଦିନ, ତୋ ଭାଇନାର ବାହାଘରରେ ତୁ ନିଶ୍ଚୟ ରହିବୁ ।'

ଝିଅଟା ବି ସବୁଦିନ ଫୋନ୍ କରୁଥିଲା । କେବେ କେବେ ଅଳ୍ପ ସମୟ ପାଇଁ ଆସି ବୁଲି ଯାଉଥିଲା । କହୁଥିଲା, 'ଦେଖ, ମୁଁ କହି ଦେଉଛି । ମୁଁ ନ ଆସିଲେ, ଭାଇନା ବର ହୋଇଯିବ ନାହିଁ ।'

'ତା'ର କିଛି ଉପାୟ ନ ଥିଲା, ଶ୍ୱେତା । ବମ୍ବେରେ ସେଇ ନବନିର୍ମିତ ବିଖ୍ୟାତ ସ୍ପେସ୍ ସାଇନ୍ସ ଇନ୍‌ଷ୍ଟିଚ୍ୟୁଟ୍‌ର ଉଦ୍‌ଘାଟନ ଉତ୍ସବକୁ ଲୋପା ନିମନ୍ତ୍ରିତ ହୋଇଛି ଜଣେ ସମ୍ମାନାସ୍ପଦ ଅତିଥି ଭାବରେ । ତୁମ ଲୋପା ଗଭର୍ଣ୍ଣରଙ୍କ ସହ ଜଣେ ମହାନ୍ ଅତିଥି ଭାବରେ ଯୋଗ ଦେଉଛି ।'

'ସବୁ ଜାଣିଛ, ତୁମକୁ ସେ ଫୋନ୍ କରୁଛି । ମୋତେ ନା ସେ କିଛି କହୁଛି ବା ତୁମେ ବି କିଛି କହୁନ ?' ପ୍ରଭାତଙ୍କୁ ଚାହିଁ ବ୍ୟସ୍ତରେ କହି ପକାଇଲା ଶ୍ୱେତପଦ୍ମା । ସତେ ଯେପରି ଲୋପା ଉପରେ ତା'ର ସବୁ ଅଧିକାର ?

'ତା'ର ତ ଏବେ ପର ଲାଗିଛି । ତାକୁ ଆସିବାକୁ ଅପେକ୍ଷା କଲେ କ'ଣ ହେବ ? ଥାଉ, ତା' କଥା ଚିନ୍ତା କରିବାକୁ ଏବେ ବେଳ ନାହିଁ । ଆସିଲ ଦେଖିବା କ'ଣ କାମ ଏବେ ବାକି ରହିଲା ।'

ପ୍ରଭାତଙ୍କୁ ଡାକି ନେଇ ବୈଠକ ଘରର ସୋଫାଟିରେ କ୍ଳାନ୍ତ ଭାବରେ ବସିଲା ଶ୍ୱେତପଦ୍ମା ।

'ସବୁ କାମ ଠିକ୍ ଚାଲୁଛି । ତୁମରି ନିର୍ଦ୍ଦେଶରେ ତ ସବୁ ହେଉଛି । ଏଇଠି ବସିଲ ଦଶ ମିନିଟ୍ ମୋ ପାଖରେ ।' ପ୍ରଭାତଙ୍କ କଥାରେ ଟିକିଏ ହସିଲା ଶ୍ୱେତପଦ୍ମା ।

ସତେ ତ, କେତେ ଖୁସି ଖୁସି ଭାବ ସମସ୍ତଙ୍କ ମନରେ । ଏଠି ସବୁ ଦାୟିତ୍ୱ

ସ୍ୱାମୀମାନଙ୍କ ଉପରେ ଲଦି ଦେଇ ନିଶ୍ଚିନ୍ତରେ ଗପରେ ମାତିଛନ୍ତି ନଣନ୍ଦମାନେ।

କିଏ ଜଣେ ଆସି ଚା' ଦେଇଗଲା ସେ ଦୁହିଁଙ୍କୁ ।

'ନିଅ, ତୁମ ପାଇଁ ଚା' ଆସିଗଲା ।' ପ୍ରଭାତ ଶ୍ୱେତପଦ୍ମାଙ୍କୁ ଚା' କପ୍‌ଟିଏ ଧରେଇ ଦେଇ ନିଜ କପ୍‌ଟି ଉଠାଇ ନେଲେ ।'

ଚିନ୍ତାରୁ ଫେରି ଆସିଲା ଶ୍ୱେତପଦ୍ମା । କ୍ଳାନ୍ତ ଭାବରେ ଚା' ପିଇବା ସମୟରେ ବାହାର ରାସ୍ତାର ଦେଖାଯାଉଥିବା କିଛି ଅଂଶକୁ ଚାହିଁ ରହିଥିଲା ସେ । ଏବେ ଭଲ ଭାବରେ ଦେଖିବା ପାଇଁ ସେ ଅନ୍ୟ ସୋଫାକୁ ଉଠିଗଲା ।

'ଆରେ ଏ ଦିହେଁ କିଏ ?' ନବନୀତା ସାନ ଭଉଣୀକୁ ପଚାରୁଛି ।

ଫାଟକ ପାଖରେ ଟ୍ୟାକ୍ସିରୁ ଓହ୍ଲାଇଲେ ସେମାନେ । ପର୍ସରୁ ଟଙ୍କା କାଢ଼ି ଯୁବକ ଜଣକ ଡ୍ରାଇଭରକୁ ଧରାଇଲେ ।

'ଝିଅଟିକୁ ଚିହ୍ନିଲା ଭଳି ମନେ ହେଉଛି । ତଥାପି ପାଖକୁ ନ ଆସିଲେ ଜାଣି ହେବ ନାହିଁ ।' ଲାଲିମା ଉତ୍ତର ଦେଲା ।

ଝିଅଟିର ଶାନ୍ତ ସୌନ୍ଦର୍ଯ୍ୟରେ ସେ ସ୍ଥାନଟି ଯେପରି ଆଲୋକିତ ହୋଇ ଉଠିଛି । କାନରେ ଧଳା ପଥର ବସା ୟରରିଂ । ବେକରେ ମ୍ୟାଚିଂ ସରୁ ଚେନ୍ । ହାତରେ ପଟେ ସେଇଭଳି ଚୁଡ଼ି । ଅନ୍ୟ ହାତରେ ସରୁ ସୁନେଲି ଘଣ୍ଟାଟି । ଦେହକୁ ମାନିଲା ଭଳି ସିଲ୍‌କ ଶାଢ଼ି, ବ୍ଲାଉସ୍ ।

ଗୋଟିଏ ଚାଉଳରେ ଗଢ଼ା ଏହି ଅପରୂପା ରାଜକନ୍ୟାଟି କିଏ ? ସମସ୍ତଙ୍କ ମନରେ ଏଇ ଜିଜ୍ଞାସା । ସାଙ୍ଗରେ ଥିବା ଯୁବକଟି ବଡ ସୁଟ୍‌କେଶ୍ ଦୁଇଟି ଟ୍ୟାକ୍ସିରୁ ଓହ୍ଲାଇ ଧରିଛି । ଝିଅଟି ପାଖକୁ ଆସିବା ପରେ ସେମାନେ ଦୁହେଁ କଥାବାର୍ତ୍ତା କରି ଆଗେଇ ଆସୁଛନ୍ତି ।

ଲାଲିମା ପଚାରିଲା, 'ୟାକୁ ଯେ କହିବ ପ୍ରପର୍ ମ୍ୟାଚ । ନୁହେଁ ? ତୋର କ'ଣ ମତ ? କିଛି କହୁନୁ ଯେ ନାନୀ ?'

'ଧେତ୍, କିଛି ନ ଭାବି ନ ଚିନ୍ତି କ'ଣ କହୁଛୁ, ଲାଲି ? ସେମାନେ ଭାଇ,

ଭଉଣୀ ବି ହେଇ ପାରନ୍ତି । ତେବେ ସେ ଦୁହିଁଙ୍କୁ ଦେଖିଲେ ମନ ଆନନ୍ଦିତ ହେଉଛି ।'

ଝିଅଟି ଫାଟକ ଭିତରେ ପଶି କାହାକୁ ନ ଚାହିଁ କ'ଣ ଚିନ୍ତା କରୁଥିଲା । ସେତେବେଳେ ଯୁବକଟି ତା ହାତରୁ ସୁଟ୍‌କେଶ୍‌ଟି ନେଇ ସାମୟିକ ଭାବରେ ହଠାତ୍ କେଉଁଠି ରଖିଦେବ, ସମ୍ଭବତଃ ଏମିତି କିଛି ଭାବନା ତାକୁ ବ୍ୟସ୍ତ କରୁଥିଲା । ଅକସ୍ମାତ୍ କାହାକୁ ଚାହିଁଦେଇ ତା' ଓଠରେ ସୁନ୍ଦର ହସଟିଏ ଦେଖାଦେଲା ।

'ଆରେ ମା', ଏତେ ଡେରି କଲୁ ? ତୋତେ ଆମେ ଅପେକ୍ଷା କରି ବସିଛୁ ।'

'ଫ୍ଲାଇଟ୍ ଖୁବ୍ ଲେଟ୍‌ରେ ପହଞ୍ଚିଲା, ଅଙ୍କଲ୍ ।' ପ୍ରଭାତଙ୍କ ପାଦ ଛୁଇଁ ପ୍ରଣାମ କଲା ଲୋପା ।

'ରୋଷନ୍, ମୋର ଅଙ୍କଲ୍ । ଅଙ୍କଲ, ରୋଷନ୍ ମୋ କ୍ଲାସ୍‌ମେଟ୍ । ଆମେ ଏକାଠି କାମ କରୁଥିଲୁ । ସେ ମୋ ସହ ବମ୍ବେ ଯାଇଥିଲେ । ଆମେ ଏକାଠି ଫେରିଲୁ ।'

ଯୁବକଟି ହାତ ଯୋଡିଲା ପ୍ରଭାତଙ୍କୁ । ପ୍ରଭାତ ସ୍ନେହମୁଗ୍ଧ ଦୃଷ୍ଟିରେ ଚାହିଁ ରହିଲେ ରୋଷନ୍‌କୁ ।

'ରୋଷନ୍ ହସି ହସି କହିଲା, 'ମୁଁ ଆସୁଛି ଆଜ୍ଞା; ଲୋପାକୁ ଛାଡି ଦେବାକୁ ଆସିଥିଲି ।'

ଲୋପା କ'ଣ କହିବ କହିବ ହୋଇ ନିରବ ହୋଇଗଲା । ପ୍ରଭାତ ବାଧାଦେଲେ,

'ଏ କ'ଣ ବାବୁ, ତୁମେ ଯାଇପାରିବ ନାହିଁ । ତୁମେ ଆମ ଲୋପାର ବନ୍ଧୁ । ଆଜି ଭଳି ଦିନରେ ଆମେ ତୁମକୁ ଛାଡିଦବୁ !'

'ଅଙ୍କଲ୍....'

'ନା - ମୁଁ କିଛି ଶୁଣିବି ନାହିଁ ।'

ସେ ପାଖରୁ ପ୍ରଭାତଙ୍କୁ କେଉଁ ବିଷୟରେ ପଚାରିବା ପାଇଁ ଆସୁଥିଲେ ଶ୍ୱେତପଦ୍ମା । ପାଦ ସ୍ଥିର ହୋଇଯାଉଛି । ଲୋପାକୁ କୋଳେଇ ନେଇ ତା' କଥାମାନ ଶୁଣୁଥିଲେ ବି ସେ ରୋଷନ୍‌କୁ ଏକ ଦୃଷ୍ଟିରେ ଚାହିଁ ରହିଥିଲେ ।

ଦେବଦୂତ ଭଳି କିଏ ଏ ପିଲାଟି ? ଲୋପା ପାଖରେ ଠିଆହେଲେ ମନେ ହେଉଛି ଲକ୍ଷ୍ମୀ, ନୃସିଂହ ଯୋଡି । ଲୋପା ତ ମୋତେ କେବେ କିଛି କହିନାହିଁ । ଠାକୁରଙ୍କର

କ'ଣ ଇଚ୍ଛା ? ଥାଉ, କେତେବେଳେ ଏକାନ୍ତରେ ଲୋପାର ମନୋଭାବ ବୁଝିବି ।

'ତୁମକୁ ଏଯାଏ ଚିହ୍ନେଇ ଦେଇ ନାହିଁ । ଇଏ ରୋଷନ୍, ଆମ ଲୋପାର ବନ୍ଧୁ ।' ପ୍ରଭାତ ହସି ହସି କହିଲେ ।

ରୋଷନ୍ ଶ୍ୱେତପଦ୍ମାଙ୍କୁ ନମସ୍କାର କଲା । କହିଲା, 'ଆଣ୍ଟି, ଆପଣଙ୍କ ବିଷୟରେ ଲୋପା ସବୁବେଳେ କହନ୍ତି । ଆପଣଙ୍କୁ ଫୋନ୍ ନ କରିପାରିଲେ ଖୁବ୍ ବ୍ୟସ୍ତ ହୁଅନ୍ତି ସେ ।'

ଶ୍ୱେତପଦ୍ମାର ଆଖି ଅଶ୍ରୁସଜଳ । ପ୍ରଭାତ ପତ୍ନୀଙ୍କୁ ଚାହିଁଦେଇ କହିଲେ, 'ଶ୍ୱେତା, ଝିଅଟା ଅନେକବେଳୁ ଆସିଛି । ଅରୁଣ ତାକୁ ଅପେକ୍ଷା କରିଥିଲା ।'

ଶ୍ୱେତପଦ୍ମା ହସିଲା ।

'ହଁ, ମୁଁ ତ ସବୁ କଥା ଭୁଲି ଯାଉଛି । ଆ'ରେ ମା' ।'

'ଲୋପା ମା', ତୁ ଖୁବ୍ କ୍ଳାନ୍ତ ଲାଗୁଛୁ । ଯା' ତ କ'ଣ ଟିକେ ଖାଇନେ, ମୁଁ ରୋଷନ୍‌ଙ୍କ ଖବର ବୁଝୁଛି । ଦେଖ ରୋଷନ୍, ତୁମକୁ ଛାଡିଦେବାର ଦାୟିତ୍ୱ ମୋର । କିନ୍ତୁ କାଲି ଆସି ଏଇଠି ବ୍ରେକ୍‌ଫାଷ୍ଟ ଖାଇବ । ବରଯାତ୍ରୀରେ ନିଶ୍ଚୟ ଯିବ ।'

ରୋଷନ୍ ପ୍ରଭାତଙ୍କୁ ମନା କରି ପାରିଲା ନାହିଁ । ଶ୍ୱେତପଦ୍ମା ଦୁହିଁଙ୍କ ମନୋଭାବର ଛାପ ସେମାନଙ୍କ ମୁହଁ ଦେଖି ବୁଝି ପାରୁଥାଏ ।

ରୋଷନ୍ ଥରେ ଲୋପାକୁ ଏବଂ ଥରେ ପ୍ରଭାତଙ୍କୁ ଚାହିଁ ଅଗତ୍ୟା ରାଜି ହେଲା ରାତିରେ ଖାଇକରି ଯିବ ଏବଂ ସକାଳୁ ଆସି ହାଜର ହୋଇ ସାରାଦିନ ରହିବ । ଏମିତିରେ ତ ଏଇ କେତେଦିନ ହେବ ସେ ଲୋପା ସହ ରହିଛି । ମନା କରିବାର କିଛି ଆବଶ୍ୟକତା ନାହିଁ । ଏବେ କିଛିଦିନ ତା' ହାତରେ ଫାଙ୍କା ସମୟ ଅଛି । ଆସିବା ସମୟରେ ଲୋପା କହୁଥିଲା,

'ତୁମେ ରହିଲେ ମୁଁ ଖୁସୀ ହେବି ।' ରୋଷନ୍ କହେ, 'ନିମନ୍ତ୍ରିତ ନ ହୋଇ ଅତିଥି ?' ଲୋପା କହେ, 'ଦେଖ, ମୁଁ ନିମନ୍ତ୍ରଣ କରୁଛି । ମୁଁ କହିବି ମାନେ ନିମନ୍ତ୍ରଣରୁ ବି ଅଧିକ ।' 'ସତେ ?' ରୋଷନ୍ ତାକୁ ଏ ବିଷୟରେ ଅଧିକ କିଛି ନ ପଚାରି ତା'ର ହସ ହସ ମୁହଁକୁ ଚାହିଁ ରହିଲା । ଲୋପା ବି କାହିଁକି କେଜାଣି ସେଇ ମୁହୂର୍ତ୍ତରେ ରୋଷନ୍‌କୁ ସେମିତି ଖୁସି ଖୁସି ଭାବ ନେଇ ଦେଖୁଥିଲା ।

ସମୟ କେବେ କେବେ ସୌନ୍ଦର୍ଯ୍ୟର ଉପଚାରମାନ ନେଇ ଉପସ୍ଥିତ ହୁଏ । ମାତ୍ର ସେଇ ମୁହୂର୍ତ୍ତମାନଙ୍କୁ ଉପଭୋଗ କରିବାର ମନ ହୁଏତ ସମସ୍ତଙ୍କ ପାଖରେ ନ

ଥାଏ । ରୋଷନ୍ ନିଜକୁ ନିଜେ ପଚାରିଲା - ତୁ ତ ନିଜେ ଜଣେ ବୈଜ୍ଞାନିକ । ପ୍ରେସ୍ ସାଇନ୍ଟିଷ୍ଟ । ବ୍ରିଲିୟାଣ୍ଟ ରିସର୍ଚ୍ଚ ସ୍କଲର୍ ! ତୋର ଯେ ଏଭଳି ମନ ! ତା' ଠିକ୍ ବୁଝାପଡୁ ନାହିଁ । ତା' ମୁଁ କହିପାରିବି ନାହିଁ । କାହାର ବିଶେଷ ବନ୍ଧୁତା, ଆପଣାର ଭାବ ମୋତେ ଯେ ଅନ୍ୟ ଜଣେ କରିଦେଇଛି, ତା' କ'ଣ ସମସ୍ତଙ୍କୁ ମୁଁ ବୁଝେଇ ପାରିବି ?

ଲୋପାକୁ କିଛି କହିବା ଉଦ୍ଦେଶ୍ୟରେ ସେପାଖକୁ ଆଉଥରେ ଚାହିଁ ରହିଲା ରୋଷନ୍ । ସେତେବେଳେ ଶ୍ୱେତପଦ୍ମା ସାଥିରେ ସମ୍ଭବତଃ ଅରୁଣ ପାଖକୁ ଯାଇ ସାରିଥିଲା ଲୋପା । ଏବେ ସେ ପ୍ରଭାତଙ୍କୁ କହିଲା,

'ଅଙ୍କଲ୍, ମୁଁ ଟିକେ ଫୋନ୍ କରିବି ଘରକୁ ।'

'ଆସ, ମୋ ସହ । ଏଇଠି ବସି କଥା କୁହ । ମୁଁ ଆସୁଛି ଅଳ୍ପ କାମ ସାରି ।' ପାଖ ଘରେ ରୋଷନ୍‌କୁ ବସେଇ ପ୍ରଭାତ କେଉଁ କାମରେ ବାହାର ପାଖକୁ ଚାଲିଗଲେ ।

'ଦେଖିଲ ତ ଭାଇନା, ମୁଁ କହିଛି ଆସିବି, ଯେମିତି ହେଲେ ଆସି ଯାଇଥାଆନ୍ତି । କିନ୍ତୁ ମୋ କଥା କ'ଣ ତୁମର ମନେଥିଲା ? ମନ ତ ଯାଇ ଶ୍ୱଶୁର ଘରେ ।'

'କ'ଣ କହିଲୁ ? ଆଉ ଥରେ କହ ତ ?' ଅରୁଣ ଲୋପାକୁ ଶାସନ କରିବା ଭଙ୍ଗିରେ ଚାହିଁ ରହିଲା । ଏଣେ ଓଠ ଫାଙ୍କରେ ଚେନାଏ ହସ । ଲୋପା କହିଲା, 'ଦେଖୁଛ ରୋଷନ୍, ୟାଙ୍କର କୁଆଡେ ଭାଉଜ ଘରକୁ ବରବେଶ ସାଜି ଯିବାକୁ ମନ ନାହିଁ ।'

ଏ ମଧ୍ୟରେ ଅରୁଣର ରୋଷନ୍ ସହ ବନ୍ଧୁତା ହୋଇଛି । ସେମାନେ ତିନିଜଣ ଏକାଠି ରାତି ଖାଇବା ଖାଉଛନ୍ତି । ପୁଝାରୀ ହାତରୁ ପାତ୍ରମାନ ନେଇ ନିଜେ ଶ୍ୱେତପଦ୍ମା ପିଲାଙ୍କ ପ୍ଲେଟ୍‌ରେ ପରଷି ଦେଉଛି । ଟେବୁଲ୍‌ର ଅନ୍ୟ ପାଖରେ ଖାଉଥିବା ବଡ ନଣନ୍ଦ ଦୁଇଜଣଙ୍କର ସଦ୍ୟ କଲେଜରେ ପାଦ ଦେଇଥିବା ଝିଅ ଦୁହେଁ ଏସବୁ ଆଳାପ ଉପଭୋଗ କରୁଥିଲେ । ସାହସ କରି ଜଣେ କହିଲା,

'ଲୋପାନାନୀ, ତୁମେ ଯଦି ଆକାଶରେ ଉଡୁଥାଆନ୍ତ, ଅରୁଭାଇନାଙ୍କ ବାହାଘରକୁ କେମିତି ଆସିପାରିଥାଆନ୍ତ ?'

'ଠିକ୍ ପଚାରିଛ ପିଲାଏ ।' ଅରୁଣ ସେମାନଙ୍କୁ ସମର୍ଥନ କଲା ।

'ତା' ହେଇପାରିବ ନାହିଁ । ମୁଁ ଏ ବାହାଘର ବନ୍ଦ କରି ଦେଇଥାଆନ୍ତି । ନୋଚେତ୍ ଉଡିବା ବନ୍ଦ କରି ଅଧାରୁ ପଳେଇ ଆସିଥାଆନ୍ତି ।' ହସି ହସି ଉତ୍ତର ଦେଲା ଲୋପା । ଅନ୍ୟମାନେ ଏକାଠି ହସିବାରେ ଲାଗିଲେ । କିଛି ନ ବୁଝିପାରି ଆଶ୍ଚର୍ଯ୍ୟରେ ଏମାନଙ୍କୁ ଚାହିଁ ରହିଲେ କେତେଜଣ ।

ଏ ବାହାଘରକୁ ଆସିଥିବା ବନ୍ଧୁବାନ୍ଧବଙ୍କର ସେଇ ଯେପରି ଗୋଟିଏ ବିଷୟରେ ଚର୍ଚ୍ଚା ଚାଲିଥାଏ । ପ୍ରାୟ ଦେଖାଯାଏ ସ୍ତ୍ରୀଲୋକମାନେ ଶାଢ଼ି, ଗହଣା, ଫେସନ୍, ନିଜ ଝିଅ ପାଇଁ ବର, ପୁଅ ପାଇଁ ବୋହୂ ଖୋଜା ସମସ୍ୟା ନେଇ କଥାବାର୍ତ୍ତା କରିବାର ସୁଯୋଗ ପାଆନ୍ତି ଏମିତି ଏକ ବିବାହ ଉତ୍ସବରେ ଏକାଠି ହେଲେ । ମାତ୍ର ଏଠି ସଂପୂର୍ଣ୍ଣ ବିପରୀତ । ଅଧିକ କଥା କହୁଥିବା କେଉଁ ଏକ ବୟସ୍କା, ପ୍ରୌଢ଼ା ମହିଳା ଆଧ୍ୟାତ୍ମିକ ଦିଗ ସଂପର୍କରେ ବେଶ୍ ଆଲୋଚନା ଆରମ୍ଭ କରିଦେଇଛନ୍ତି । କଥା ଆରମ୍ଭ ହୋଇ କେଉଁଆଡେ ଲମ୍ବି ଯାଉଛି, ସେଥିପ୍ରତି ତାଙ୍କର ଲକ୍ଷ୍ୟ ନାହିଁ । କିଛି ନ ବୁଝିପାରି କେତେଜଣ ଶ୍ରୋତା ସେହି ଓଜସ୍ୱିନୀ ଭାଷାର ସୌନ୍ଦର୍ଯ୍ୟରେ ମଜ୍ଜି ଯାଇଛନ୍ତି । କେହି କେହି ଭାଷାର ଓଜନରେ ଅତିଷ୍ଠ ହୋଇ ସେମାନଙ୍କ ସାନ ପିଲା କାନ୍ଦୁଥିଲା, ମା'କୁ ଖୋଜୁଥିବା ବିଷୟରେ କହି ସେଠାରୁ ଉଠିଗଲେଣି ।

ତଥାପି ବକ୍ତାଜଣଙ୍କ ତାଙ୍କ କଥା ଉପଭୋଗ କରୁଥିବା ସ୍ୱଳ୍ପ କେତେଜଣଙ୍କ ପାଇଁ କହିବାରେ ଲାଗିଥାଆନ୍ତି ।

'ଅସୀମ, ଅନନ୍ତ ଏ ବିଶ୍ୱବ୍ରହ୍ମାଣ୍ଡର ସ୍ଥିତି । ସାଧାରଣ ପ୍ରାଣୀର ସୀମିତ ଜ୍ଞାନ, ଚିନ୍ତାଶକ୍ତି ତାହା ସଂପର୍କରେ ଅବଗତ ହେବାକୁ ଏକାନ୍ତ ଅକ୍ଷମ । ପ୍ରଭୁ ରକ୍ଷାକର୍ତ୍ତା, ଯାହାଙ୍କ ଇଚ୍ଛାରେ ଗ୍ରହ, ନକ୍ଷତ୍ର, ଅନ୍ତରୀକ୍ଷ, କୀଟ, ପତଙ୍ଗ ଆଦି ପରିଚାଳିତ, ତାଙ୍କ ସଂପର୍କରେ ମୂଢ଼ମାନବଟି କେତେଦୂର ବୁଝେ ?'

ପନ୍ଦର ସତର ବର୍ଷର କିଶୋରଟିଏ ସବୁ ଶୁଣୁଥିଲା । ସମ୍ଭବତଃ ନବନୀତାର ପୁଅ । ହଠାତ୍ ପିଲାଟି ସେମାନଙ୍କ ପାଖକୁ ଆସି ବୁଝାଇବାକୁ ଆରମ୍ଭ କଲା,

'ମାଉସୀ, ଠିକ୍ କହିଛନ୍ତି ? କଠିନ ବ୍ୟାପାର ଏସବୁ । ଆପଣ ଯାହା କହିଲେ, ଏହି ବିଶ୍ୱବ୍ରହ୍ମାଣ୍ଡର ରହସ୍ୟପୂର୍ଣ୍ଣ ଅବସ୍ଥିତି ଓ ସ୍ୱରୂପ ବିଷୟରେ ସାଧାରଣ ଜଣେ ବୁଝିବା ଅତ୍ୟନ୍ତ କଷ୍ଟକର ।'

ଭଦ୍ର ମହିଳା ଜଣକ ଖୁସିରେ ଉତ୍‌ଫୁଲ୍ଲ ହୋଇ ଉଠିଲେ । ପିଲାଟି ଏଥରକ

ଅନ୍ୟ କଥା କିଛି କହିବାକୁ ଆରମ୍ଭ କରିଛି । ଶ୍ରୋତାଙ୍କ ସଂଖ୍ୟା ଜମି ଆସୁଛି ।

'ମାଉସୀ, ଯୁକ୍ତରାଷ୍ଟ୍ରର ଆମେରିକାର 'ନାସା'ର ନାମ ଶୁଣିଥିବେ ।'

'କହ ପୁଅ, ଆମେ ଏତେ କଥା କ'ଣ ଜାଣୁଛୁ ?' ଅନ୍ୟ ଜଣେ କିଏ ଆଗ୍ରହରେ କହିଲେ ।

'ଏହି ଯେଉଁ ବିଶ୍ୱବ୍ରହ୍ମାଣ୍ଡର ସ୍ଥିତି ଓ ସ୍ୱରୂପ ସଂପର୍କରେ ଆପଣମାନେ ଏବେ କହୁଥିଲେ, ତାହା ବିଷୟରେ ଗଭୀରତମ ଗବେଷଣା କରିବା ଉଦ୍ଦେଶ୍ୟରେ ଏହି 'ନାସା'ର ସୃଷ୍ଟି । ସୂର୍ଯ୍ୟମଣ୍ଡଳରେ ରହିଛନ୍ତି ବିଭିନ୍ନ ଗ୍ରହ, ଉପଗ୍ରହ ଏବଂ ସୂର୍ଯ୍ୟମଣ୍ଡଳର ବାହାରେ ସହସ୍ର ସୂର୍ଯ୍ୟସମ ଅଗଣିତ ତାରକା ପୁଞ୍ଜ ସଂପର୍କିତ ବିଶେଷ ଜ୍ଞାନ ଆହରଣ କରିବା ପାଇଁ 'ନାସା'ର ପ୍ରମୁଖ ବୈଜ୍ଞାନିକମାନେ ସଦା ସର୍ବଦା ଗବେଷଣାଗାରରେ କର୍ମତତ୍ପର ।'

'ରହ ବଣ୍ଟି, ତୁ ଏକା ସବୁ ଜାଣିଛୁ ? ମୁଁ କହିବି । ସାଇନ୍ସ କୁଇଜ୍ ପାଇଁ ମୁଖସ୍ଥ କରିଥିବା ସବୁ କଥା ଯେ ତୁ କହିଦେଲୁ ।' ପିଲାଟିର ସମବୟସ୍କ ବାଳକଟିଏ ଅଧିକ କିଛି କହିବା ପାଇଁ ତତ୍ପର ହୋଇଉଠିଲା । ଅରୁଣ ସେଇ ଟେବୁଲ୍ ପାଖରୁ ବଡ ପାଟିରେ କହିଲା, 'ରୁହ, ବଣ୍ଟି ଭଲ କହୁଛି । ସେ ପ୍ରଥମେ ଯାହା କହିବାକୁ ଚାହୁଁଛି କହୁ ।'

ବଣ୍ଟି ଉତ୍ସାହିତ ହୋଇ ପୁନର୍ବାର ତା'ର ଭାଷଣ ଆରମ୍ଭ କଲା, 'ସୃଷ୍ଟିର ଜିଜ୍ଞାସା ଓ ଅନୁସନ୍ଧିତ୍ସାକୁ ନେଇ ଏହି ବିଜ୍ଞାନଗାରରେ ଅହରହ ପରୀକ୍ଷା, ନିରୀକ୍ଷା ଚାଲିଛି । ବିଶ୍ୱର ବହୁ ଦେଶର ବିଶିଷ୍ଟ ବୈଜ୍ଞାନିକମାନଙ୍କର ସମ୍ମିଳିତ ଉଦ୍ୟମରେ ଆଜିର ମଣିଷ ଗ୍ରହ, ଗ୍ରହାନ୍ତର ଯାତ୍ରା କରିବା ପାଇଁ ସକ୍ଷମ ହୋଇଛି । ବହୁ ଉଦୀୟମାନ, ପ୍ରତିଭାସଂପନ୍ନ ଯୁବ ବୈଜ୍ଞାନିକମାନଙ୍କ ପାଇଁ ମହାକାଶ ବିଜ୍ଞାନ ସଂପର୍କରେ ଉଚ୍ଚତର ଗବେଷଣାର ସର୍ବୋଚ୍ଚ ପୀଠ ଭାବେ 'ନାସା' ବିଶ୍ୱବିଦିତ ।

ଏବଂ ପ୍ରତିଭାମୟୀ କୁମାରୀ ଲୋପାମୁଦ୍ରା ଶର୍ମା ଆମ ଦେଶରୁ ଗବେଷଣାରେ ସର୍ବୋଚ୍ଚ ସମ୍ମାନ ଅଧିକାର କରି 'ନାସା'ରେ ଉଚ୍ଚତର ଗବେଷଣା କରିବା ପାଇଁ ଯୋଗ୍ୟ ବିବେଚିତ ହୋଇଛନ୍ତି ।'

ତାଳି ! ବୁଝିବା, ନ ବୁଝିବା ସାନବଡ ସମସ୍ତଙ୍କ ହାତତାଳିରେ ଡାଇନିଂ ହଲ୍‌ର ପରିସର ଏବଂ ସେ ସ୍ଥାନ ଅତିକ୍ରମ କରି ଅଗଣାରେ ଥିବା ଅନ୍ୟମାନଙ୍କ ହାତ ତାଳିରେ ବିବାହର ପୂର୍ବଦିନଟି ଉତ୍ସବ ମୁଖରିତ ହୋଇ ଉଠିଲା ।

ଠିକ୍ ସେହି ସମୟରେ ଝିଅଟିଏ କହିବାକୁ ଚେଷ୍ଟା କରୁଥିଲା, ଇଣ୍ଟରନେଟ୍

ଓ କେଉଁ ଏକ ବିଜ୍ଞାନ ପତ୍ରିକାରେ ସେ ପଢ଼ିଥିବା ମହାକାଶ ବିଜ୍ଞାନ ସଂପର୍କିତ ବିଶେଷ ସଂବାଦଟି । ମାତ୍ର ଏ ତାଳି ଶବ୍ଦ ଓ ବିବାହ ଉତ୍ସବ ନିମନ୍ତେ ଉପସ୍ଥିତ ଜନତାଙ୍କ ଗୁଞ୍ଜରଣରେ ତା'ର କଥା ସବୁ କେଉଁଆଡେ ମିଳେଇ ଗଲା ।

ଏ ପାଖରେ ଅଯଥାରେ ରାତି ବିଳମ୍ବ ହେଉଥିବାର ଦେଖି ସବୁ ଖବର ବୁଝୁଥିବା ମାମଲତକାର ବାବୁ ଜଣେ, ସମସ୍ତେ ଖାଇଛନ୍ତି କି ନାହିଁ ସେଇ ବିଷୟରେ ତଦାରଖ ଆରମ୍ଭ କରିଦେଇଥିଲେ ।

ଅରୁଣର କପାଳରେ ଟୋପି ଟୋପି ଚନ୍ଦନ ଦେଇ ସଜେଇଛି ପିଉସୀ ନବନୀତା । ଗଳାରେ ଲମ୍ବେଇ ଦେଇଛି ସୁଗନ୍ଧିତ ଫୁଲମାଳ, କର୍ପୂରମାଳ । ଗାଁ ବାରିକ ସିଲ୍କ ପଂଜାବୀ, ଧୋତି ପିନ୍ଧିବାରେ ସାହାଯ୍ୟ କରୁଛି । ଗାଁ ଅବଧାନେ, ପୁରୋହିତ ପାଖେ ପାଖେ ଅଛନ୍ତି ।

ଗାଁରୁ ଯେଉଁମାନେ ଆସିବା ପାଇଁ ଅତ୍ୟନ୍ତ ଆଗ୍ରହୀ, ଅନ୍ୟ ବନ୍ଧୁବାନ୍ଧବ, ଦୂର ସଂପର୍କୀୟ ହେଲେ ମଧ୍ୟ ସେମାନଙ୍କୁ ବାଦ୍ ଦେଇ ନାହାନ୍ତି ପ୍ରଭାତ । ସେମାନଙ୍କର ସମସ୍ତ ସୁବିଧା, ରହିବା, ଖାଇବା ଇତ୍ୟାଦି ଦେଖିବା ପାଇଁ ଉପଯୁକ୍ତ ଲୋକଟିଏ ବନ୍ଦୋବସ୍ତ କରାଯାଇଛି । ବାହାଘର ଓ ଚତୁର୍ଥୀଭୋଜିଭାତ ଇତ୍ୟାଦି କାର୍ଯ୍ୟ ଶେଷ ହେଲେ ସେମାନେ ପୁରୀ, ଭୁବନେଶ୍ୱର ଓ କଟକ ବୁଲାବୁଲି କରି ଗାଁକୁ ଫେରିବେ । ଯାହା ଚାହିଁବେ କିଣିବେ, ନିଜପାଇଁ, ଘର ପାଇଁ, ସ୍ତ୍ରୀ, ପିଲାଙ୍କ ପସନ୍ଦର କିଛି । ଏସବୁ ପାଇଁ ଅର୍ଥର ବ୍ୟବସ୍ଥା କରି ପ୍ରତ୍ୟେକଙ୍କ ହାତରେ ମୋଟା ଅଙ୍କର ଅର୍ଥ ଦେଇ ପ୍ରଭାତ ବୁଝେଇ  କହିଛନ୍ତି,

'କକେଇ, ଖୁଡୀ, ଭାଇନା, ଭାଉଜ, ମଉସା, ମାଉସୀ, ମାମୁ, ମାଇଁ କେହି ତ ବହୁତ ବର୍ଷ ହେଲା ସହର ମାଟି ମାଡିନ ଶୁଣି ମନ ଖରାପ ହେଲା, ପ୍ରଭୁ ଜଗନ୍ନାଥଙ୍କୁ ବି ଦର୍ଶନ କରିନ । କିଛି ଅସୁବିଧା ହେବ ନାହିଁ । ମୁଁ ସବୁ ବନ୍ଦୋବସ୍ତ କରୁଛି । ଅରୁଣର ଚତୁର୍ଥୀ କାମ ଶେଷ ହେଲେ  ପୁଅ, ବୋହୂକୁ ଆଶୀର୍ବାଦ କରି ଦିନ ଖାଇବା ଶେଷ କରି ବାହାରିଯିବେ ସନ୍ଧ୍ୟା ପୂର୍ବରୁ । ଗାଡି କେତେ ଖଣ୍ଡ ବନ୍ଦୋବସ୍ତ କରିଦେଇଛି । ମହେନ୍ଦ୍ର ରହିବାର ବ୍ୟବସ୍ଥା କରିବ । ଏସବୁ ଚିନ୍ତା କରିବାର ନାହିଁ ।

ବୁଲାବୁଲି କରି ଆସିଲେ ସେଇ ଗାଡିରେ ପରଦିନ ଭୋର ବେଳାରେ ଆପଣମାନଙ୍କୁ ଗାଁକୁ ପଠେଇଦେବି । କିଛି ଅସୁବିଧା ହେବନାହିଁ ।

ଏସବୁଥିଲା ପୂର୍ବ ରାତ୍ରିର କଥା । ଅର୍ଥାତ୍ ମଙ୍ଗଳପାକ ଭୋଜି ଶେଷ ହେବା ପରେ ସେମାନେ ବିଶ୍ରାମ ନେବାବେଳେ କହିଥିଲେ ପ୍ରଭାତ । ପ୍ରଭାତ ଜାଣନ୍ତି, ବାପା ବଞ୍ଚିଥିବାବେଳେ ଘରେ ବିବାହ, ଅନ୍ୟାନ୍ୟ ଉତ୍ସବରେ ପ୍ରଥମେ ଯାଇ ଗ୍ରାମ ଦେବାଦେବୀଙ୍କୁ ଦର୍ଶନ କରି, ନିଜର ଗୁରୁଜନ ଓ ଅନ୍ୟାନ୍ୟ ବନ୍ଧୁବାନ୍ଧବମାନଙ୍କୁ ନିମନ୍ତ୍ରଣ କରି ଆସୁଥିଲେ । ସେମାନଙ୍କର ସୁଖ, ସୁବିଧା ଦେଖିବା ପାଇଁ ସେ ଗାଁ ପିଲା ଏଇ ମହେନ୍ଦ୍ରର ବାପାଙ୍କୁ ଦାୟିତ୍ୱ ଦେଉଥିଲେ । ଏବେ ମହେନ୍ଦ୍ରର ବାପା ଅଶୀ ବର୍ଷର ବୃଦ୍ଧ । ମହେନ୍ଦ୍ର ଶିକ୍ଷିତ ବେକାର ହୋଇ ଗାଁରେ ବସିଥିଲା । ମେଧାବୀ ଛାତ୍ର । ବିଜ୍ଞାନରେ ଅଗାଧ ଜ୍ଞାନ । ବି.ଏସ୍.ସି, ବି.ଇଡି । ଦରିଦ୍ର ପିଲା ହୋଇଥିବାରୁ ପଢ଼ିବାର ସମସ୍ତ ଖର୍ଚ୍ଚ ବହନ କରିଥିଲେ ନିଜେ ପ୍ରଭାତ ।

ମହେନ୍ଦ୍ର ଶିକ୍ଷା ଶେଷ କରି ମୁହଁ ଶୁଖେଇ ଠିଆ ହେଲା । ଦୁଃଖ କରି କହିଥିଲା, 'ଭାଇନା, ଏ ଡିଗ୍ରୀ ସବୁ ନେଇ କ'ଣ କରିବି ?' ଏ ସହରରେ ପ୍ରତିକ୍ଷେତ୍ରରେ ମୋଠାରୁ ଅଧିକ ଡିଗ୍ରୀ ପାଇଥିବା ଯୁବକ ହଜାର ହଜାର ସଂଖ୍ୟାରେ ବେକାର ହୋଇ ବସିଛନ୍ତି । ମୁଁ ଏବେ କ'ଣ କରିବି ? ମୋ ବାପା, ମା' ବୃଦ୍ଧ । ଭାଇ, ଭଉଣୀ କେହି କୂଳରେ ଲାଗି ନାହାନ୍ତି ।'

ଠିକ୍ ସେହି ସମୟରେ ପ୍ରଭାତ ଶ୍ୱେତପଦ୍ମା ସହ ପରାମର୍ଶ କରି ସ୍ଥିର କଲେ, ଗାଁର ଘର, ବାଡି ଗାଁ ହାଇସ୍କୁଲ୍ ପାଇଁ ଉତ୍ସର୍ଗ କରିଦେବେ । ଦୁହିଁଙ୍କର ଏହି ବିଚାର ସମ୍ଭବତଃ ମହେନ୍ଦ୍ର ପାଇଁ ଥିଲା ଏକ ଯୋଗାଯୋଗ । ଅଳ୍ପ କିଛି ଧାନ ଜମି ତ ଅନେକ ଦିନରୁ ବିକ୍ରି ହୋଇଯାଇଛି । ଏବେ ପ୍ରଭାତ ତାଙ୍କ ଘର, ବାଡିକୁ ଲାଗି ରହିଥିବା କିଛି ଜମି ଭଲ ଟଙ୍କା ଦେଇ ଦରିଦ୍ର ଚାଷୀ, ସହର ଚାଲିଯାଇଥିବା ନିମ୍ନ ମଧ୍ୟବିତ୍ତ କେତେ ଜଣଙ୍କ ଠାରୁ କିଣି ନେଇ ନିଜ ଜମି ସହ ମିଶାଇ ସେଠାରେ ସ୍କୁଲ୍‌ଟିଏ ତିଆରି କରିବାର ଯୋଜନା ଆରମ୍ଭ କରିଦେଲେ । ସହରରୁ ତାଙ୍କର ଆର୍‌କିଟେକ୍ଟ ଓ ନାମକରା କଣ୍ଟ୍ରାକ୍ଟର ବନ୍ଧୁ ଦୁଇଜଣ ଆଦୌ ପ୍ରାପ୍ୟ ନ ନେଇ ହାଇସ୍କୁଲ୍ ନିର୍ମାଣର ଦାୟିତ୍ୱ ନେଲେ । ମହେନ୍ଦ୍ରକୁ ନିଯୁକ୍ତି ମିଳିଲା ସ୍କୁଲ୍ ଘର ନିର୍ମାଣ ପୂର୍ବରୁ । ଅନେକ ଦାୟିତ୍ୱ ତା'ର ।

ଯଥାଶୀଘ୍ର ଉଦ୍‌ଘାଟିତ ହେଲା ନବନିର୍ମିତ 'ଭରଦ୍ୱାଜ ହାଇସ୍କୁଲ୍' । ନିଜେ

ପ୍ରଧାନ ଶିକ୍ଷକ ମହେନ୍ଦ୍ର କୁମାର । ବିଦ୍ୟାଳୟର ସମସ୍ତ ଦାୟିତ୍ୱ ନେଇ ସେ ଯେ ସୁଚାରୁରୂପେ ପରିଚାଳନା କରିପାରିବ, ବିଶ୍ୱାସ ନ ଥିଲା ଶ୍ୱେତପଦ୍ମାର । ବରଂ ସେ ପ୍ରଭାତଙ୍କୁ କହିଥିଲା, 'ମହେନ୍ଦ୍ରକୁ ବିଜ୍ଞାନ ଶିକ୍ଷକ ଦାୟିତ୍ୱ ଦେଲେ ଠିକ୍ ହେବ ।'

ପ୍ରଭାତ ଠିକ୍ ବୁଝିଥିଲେ ମହେନ୍ଦ୍ରକୁ । ତାଙ୍କର ତୀକ୍ଷ୍ଣ ଦୃଷ୍ଟି ଓ ବିଚାର ଏ ଗାଁ ଓ ପାଖ ଆଖ ଗ୍ରାମମାନଙ୍କର ଘରୋଇ ବିଦ୍ୟାଳୟର ଶିକ୍ଷକମାନଙ୍କ ସହ ତୁଳନା କରି ମହେନ୍ଦ୍ରଙ୍କୁ ହିଁ ମନୋନୀତ କରିଥିଲା ବିଦ୍ୟାଳୟର ଦାୟିତ୍ୱ ନେବାକୁ ।

ପ୍ରଥମ ବର୍ଷ ବିଦ୍ୟାଳୟର ଛାତ୍ର, ଛାତ୍ରୀ ଦୁଇଜଣ ବୋର୍ଡ ପରୀକ୍ଷାରେ ପ୍ରଥମ ଦଶ ଜଣଙ୍କ ମଧ୍ୟରେ ସ୍ଥାନ ପାଇବା ଖବରଟି ସମଗ୍ର ଓଡିଶାରେ ଚହଳ ପକାଇଥିଲା ।

ମହେନ୍ଦ୍ର କୁମାର ତା' ସ୍ତ୍ରୀ, ପିଲା, ବାପା, ମା' ଓ ଭାଇଭଉଣୀଙ୍କ ସହ ସୁଖରେ ଅଛି ନିଜ ଗାଁରେ । ପ୍ରଭାତ ଭାଇନା ଓ ପଦ୍ମା ଭାଉଜ ତା' ପାଇଁ ପରମପୂଜନୀୟ । ସବୁ କାମରେ ମହେନ୍ଦ୍ରକୁ ଖୋଜା । ପ୍ରଭାତ କଥା କଥାକେ ମହେନ୍ଦ୍ରକୁ ଡାକୁଛନ୍ତି ।

ବର ବାହାରିଲାଣି ।

ଭିଡିଓବାଲା, କ୍ୟାମେରାମ୍ୟାନ୍‌ଙ୍କୁ ଡାକି ଫଟୋ ଉଠାଇବା ନିର୍ଦ୍ଦେଶ ଦେଇଛନ୍ତି ପ୍ରଭାତଙ୍କର ଅନ୍ୟ ଜଣେ ଭିଣୋଇ । ପ୍ରତ୍ୟେକଙ୍କ ମଧ୍ୟରେ ଶୃଙ୍ଖଳିତ ଭାବରେ ବଣ୍ଟାହୋଇଯାଇଛି ବିବାହ ଉତ୍ସବର ସମସ୍ତ କାର୍ଯ୍ୟ ।

ଲୋପା ଏପର୍ଯ୍ୟନ୍ତ ଶ୍ୱେତପଦ୍ମାକୁ ସାହାଯ୍ୟ କରୁଥିଲା । ନିଜେ ସେ ଅନିନ୍ଦ୍ୟାର ଶାଢ଼ି, ଗହଣା, କସ୍‌ମେଟିକ୍ସ ଥିବା ସୁଟ୍‌କେଶ୍‌ଟିର ଦାୟିତ୍ୱ ନେଲା । ଏଇଟି ଦେବାକୁ ହେବ ଅନିନ୍ଦ୍ୟାର ମା'ଙ୍କୁ ।

ସାନ ପିଉସା ଅରୁଣର ପାଖେ ପାଖେ ରହିବେ । ପାରମ୍ପାରିକ ବିବାହରେ ଯାହା ଯେପରି ହୁଏ, ଅରୁଣର ବିବାହରେ ଏସବୁ କିଛି ବାଦ୍ ଯାଇ ନ ଥିଲା ।

ସେଦିନ ଶ୍ୱେତପଦ୍ମା, ପ୍ରଭାତ, ଅରୁଣ ଉପବାସ ରହିଛନ୍ତି । ଶ୍ୱେତପଦ୍ମା ସକାଳୁ ଓପାସ ରହି ବୁଝାବୁଝି କରୁଛି । ପୁଅର ବାହାଘର । ବିବାହ ଶେଷ ନ ହେବାଯାଏ

ସରବତ ବ୍ୟତୀତ ସେ, ପ୍ରଭାତ, ଅରୁଣ ପ୍ରାୟ କିଛି ଖାଇବେ ନାହିଁ । କିଏ ଜଣେ କହିଦେଇ ଗଲେ, 'ଅଙ୍କ ଶୁଖିଲା ମହାପ୍ରସାଦ ମିଶେଇ ଫଳ, ମିଠା, ଖାଇଲେ କ୍ଷତି ନାହିଁ ।'

ଅରୁଣ କହେ, 'ମୁଁ ଠିକ୍ ଅଛି ମା' । ଏସବୁ କିଛି ଦରକାର ନାହିଁ ।'

ଗାୟତ୍ରୀଙ୍କୁ ଗାଧୋଇଦେଇ ସଫା ଶାଢ଼ି ଖଣ୍ଡିଏ ପିନ୍ଧାଇ ହୁଇଲ୍ ଚେୟାର୍‌ରେ ଆଣି ଅନ୍ୟ ଏକ ଚେୟାର୍‌ରେ ବସେଇ ଦେଇଛି ଇନ୍ଦୁ । ବୁଢ଼ୀ ତଥାପି ବୁଝିପାରୁଛନ୍ତି, ତାଙ୍କର ଏକମାତ୍ର ନାତିର ବିବାହ ଉତ୍ସବର ଦିନ ଏ ।

ବହୁଲୋକଙ୍କର ଯିବା ଆସିବା, ତେଲିଙ୍ଗି ବାଜାଠାରୁ ଆରମ୍ଭ କରି ବ୍ୟାଣ୍ଡ୍ ପାର୍ଟିରେ ନୂଆ ହିନ୍ଦୀ ଫିଲ୍ମର ସ୍ୱର ତାଙ୍କୁ ଛୁଇଁ ପାରୁଥିଲା କି ନାହିଁ ବୁଝି ହେଉନଥିଲା । ମାତ୍ର ସେ ଶାନ୍ତ, ଉତ୍‌ଫୁଲ୍ଲ ମନେ ହେଉଥିଲେ । ସେହି ବ୍ୟସ୍ତତାର ସମୟରେ ତାଙ୍କ ମନୋଭାବ ବୁଝିବା ପାଇଁ, ତାଙ୍କ ଆଡେ ଚାହିଁବା ପାଇଁ କାହାର ବା ସମୟ ଥିଲା ? ତେବେ ଇନ୍ଦୁ ପ୍ରାୟ ପାଖେ ପାଖେ ରହି କହୁଥିଲା, 'ବୁଢ଼ୀମା' ନାତି ମା'ଙ୍କ ପାଖରୁ, ଠାକୁରଘର ପାଖରୁ ଆସିଲେଣି । ଏବେ ଗାଡିରେ ବସିବେ । ହେଇ ତୁମ ପାଖକୁ ଆସୁଛନ୍ତି, ତାଙ୍କୁ ଆଶୀର୍ବାଦ କର ।' ଗାୟତ୍ରୀଙ୍କର ହାତ ଟେକି ଆଶୀର୍ବାଦ କରିବାର କ୍ଷମତା ନ ଥିଲା । ତଥାପି ନାତିକୁ ଚାହିଁ ସାମାନ୍ୟ ହସିଲେ ସେ । ସେତେବେଳେ ସେ ମନେ ହେଉଥିଲେ ଅନ୍ୟ ଜଣେ କେହି ।

ଅରୁଣର ବିବାହ, ବିବାହ ଭୋଜି ଅତ୍ୟନ୍ତ ଆଡମ୍ବର ସହ ସଂପନ୍ନ ହେଲା । ପ୍ରଭାତଙ୍କର ଭଉଣୀମାନେ, ବନ୍ଧୁବାନ୍ଧବ ବିଦା ହୋଇଗଲେ ।

ନୂଆ ଭାଉଜ ଅନିନ୍ଦ୍ୟା ସହ ଦୁଇଦିନ ହସଖୁସିରେ ବିତାଇ ଫେରିଗଲା ଲୋପା । ତା'ର ତ ଏବେ ଅନେକ ପ୍ରକାର ବ୍ୟସ୍ତତା । ଅରୁଣର ବିବାହ ପାଇଁ ଯାହା ଚାରି ପାଞ୍ଚଦିନ ସେ ରହିଯାଇଥିଲା । ଶ୍ୱେତପଦ୍ମା, ପ୍ରଭାତ ତାକୁ ବାଧ କରିପାରିଲେ ନାହିଁ ଅଧିକ ଦିନ ରହିବା ପାଇଁ ।

ନବବଧୂ ଅନିନ୍ଦ୍ୟାକୁ ନେଇ ଅରୁଣ ଯାଇଛି ସୁଇଜରଲ୍ୟାଣ୍ଡ୍ । ସେଠାରୁ ଫେରିବା ପରେ ଚାରି ପାଞ୍ଚଦିନ ଘରେ ରହି ସେମାନେ ଯିବେ ବାଙ୍ଗାଲୋର ।

ପ୍ରଭାତ ଏବେ ନିଶ୍ଚିନ୍ତ ହୋଇ ନିଜର ଫ୍ୟାକ୍ଟ୍ରିର କାର୍ଯ୍ୟରେ ମନୋନିବେଶ କଲେଣି । ପୁଅ ବିବାହର କର୍ତ୍ତବ୍ୟ ସମାପନ ପରେ ସେ ଅଧିକ ସମୟ ଅଫିସ୍‌ରେ ବିତାଇବା ଯେପରି ସମୀଚୀନ ମନେ କରୁଛନ୍ତି । ପ୍ରଭାତଙ୍କର ବାକୀ କାମର ତାଲିକା ଖୁବ୍ ବେଶୀ । ସେ ସେହିସବୁ କାର୍ଯ୍ୟର ମହାସମୁଦ୍ର ମଧ୍ୟରେ ହଜିଗଲେ ଏ ପାଖରେ ଅନ୍ୟ କାହା କଥା ମନେପଡେ ନାହିଁ ତାଙ୍କର । ଶ୍ୱେତପଦ୍ମା ତଥାପି ତାଲିକା ଧରି ବସିଛି । କାହାପାଇଁ ଲୁଗା, ମିଠା ଯିବ । ଭାଇ, ଭାଉଜ ପିଲାମାନେ ଆସିଥିଲେ । ସମସ୍ତଙ୍କ ପାଇଁ ମନ ପସନ୍ଦର ଶାଢ଼ି, ପ୍ୟାଣ୍ଟ୍, ସାର୍ଟ କନା, ବଡ ବଡ କେତୋଟି ମିଠା ପ୍ୟାକେଟ୍, ଫଳ ଝୁଡି ଇତ୍ୟାଦି ନିଜେ ନେଇ ଦେଇ ଆସିଥିଲା ଶ୍ୱେତପଦ୍ମା । ସେତେବେଳେ ଅରୁଣ, ଅନିନ୍ଦ୍ୟାଙ୍କୁ ସେ ମଧୁଚନ୍ଦ୍ରିକା ପାଇଁ ପଠାଇସାରିଥିଲା । ସେଇ ରାତିଟା ବାପଘରେ ବିତାଇବାକୁ ସ୍ଥିର କରିଥିଲା ଶ୍ୱେତପଦ୍ମା । ନିଜକୁ ନିଜେ ସେ କହିଥିଲା,

'ସେଠି ରହିବାର ଅଧିକାର ମୋର ଅଛି । ସେମାନେ ମୋତେ ରହିବା ପାଇଁ କହନ୍ତୁ ବା ନ କହନ୍ତୁ ।'

ନିଜ ମଣିଷମାନଙ୍କୁ ଅଯଥାରେ ଖରାପ ଭାବିବା ଆଦୌ ଠିକ୍ ନୁହେଁ । ନିଜର ବା ପର ହେଉ ଏମିତିରେ 'ଖରାପ ମଣିଷ' କହି ନିଜ ମନକୁ ବିଷାକ୍ତ କରିବା ଲୋକଟି ହିଁ ନିଜେ ଭଲ ନୁହେଁ । ଫେରିବା ସମୟରେ ଏମିତି କେତେ ବିଷୟ ମନକୁ ଆସୁଥିଲା ଶ୍ୱେତପଦ୍ମାର ।

ପୂର୍ବରୁ ଫୋନ୍ କରିଥିଲା ସେ ବଡଭାଇ, ଭାଉଜଙ୍କୁ । ଦିନ ଏଗାରଟା ବେଳେ ପହଞ୍ଚି ତା'ର ମନେହେଲା, ସତେ ଯେପରି ସେମାନେ ଏମନ୍ତେ ତାକୁ ଅପେକ୍ଷା କରିଛନ୍ତି । ଭାଉଜ ଦୁହେଁ ଶ୍ୱେତପଦ୍ମାଙ୍କୁ ଶ୍ରଦ୍ଧାରେ କୋଳେଇ ନେଲେ ।

ବଡ ଭାଉଜ କହିଲେ, 'କେତେଦିନ ପରେ ତୁମେ ପାଦ ଦେଉଛ ଏ ଘରେ !'

'ଏ କେତେଦିନ ପ୍ରଭାତବାବୁ ନିଜ ଖବର ନିଜେ ବୁଝନ୍ତୁ । ଶ୍ୱେତାଙ୍କୁ ଛାଡିବ ନାହିଁ, ନାନୀ ।' ସାନ ଭାଉଜଙ୍କ ଆଖିରେ ଅଶ୍ରୁ ।

ଶ୍ୱେତା ଯେପରି ସାନ ଝିଅଟିଏ, ବହୁତ ଦିନ ପରେ ଘରକୁ ଫେରି ଆସି ମା' ବାପାଙ୍କୁ ଦେଖୁଛି । ସେମାନେ ତା'ର ପ୍ରତିଟି ଶବ୍ଦ ତୋଳି ଧରୁଛନ୍ତି ଆନନ୍ଦରେ ।

'ପରେ ଆସି ରହିଲେ ହବ ନାହିଁ । ହେଲା ଭାଉଜ, ଆଜି ରାତିଟା ତ ତୁମେ ନ କହିଲେ ବି ମୁଁ ରହିଥାଆନ୍ତି ।'

'ଏ ତୋ ଘର ମା', ତୋର ଯେତେବେଳେ ଇଚ୍ଛା ଆସିବୁ ? ତୋର ମୋର ସମାନ ଅଧିକାର ଏ ଘରେ ।'

ବଡଭାଇ ବୟସରେ ଖୁବ୍ ବେଶୀ ବଡ ନ ହେଲେ ବି ପିଲାଟି ଦିନରୁ ସେ ଶ୍ୱେତାକୁ ମା' ବୋଲି କହନ୍ତି କଥା କଥାକେ । ସେପାଖ କାନ୍ଥରେ ମା' ବାପାଙ୍କର ଫଟୋ ଦୁଇଟି । ଦୁହେଁ ହସୁଛନ୍ତି, ପିଲାମାନଙ୍କୁ ଆଶୀର୍ବାଦ କରୁଛନ୍ତି ସେମାନଙ୍କର ପରସ୍ପର ପ୍ରତି ସ୍ନେହଶୀଳ କଥାବାର୍ତ୍ତା ଶୁଣି । ଶ୍ୱେତପଦ୍ମା ଯେପରି ପଛ ଦିନମାନଙ୍କୁ ଫେରି ଆସିଥିଲା । ରାତିରେ ନିଜେ ପ୍ରଭାତ ଫୋନ୍ କଲେ । କହିଲେ, 'ଆଜି ଘରେ ଏକା ଏକା ବସି ଡିନାର୍ ଖାଇଲି । ତୁମେ ପାଖରେ ନାହଁ ।'

'ସକାଳେ ବ୍ରେକ୍‌ଫାଷ୍ଟ୍ ଖାଇ ଅଫିସ୍ ଚାଲି ଯିବ । ଦ୍ୱିପହରେ ଏକାଠି ଖାଇବା ।'

ଶ୍ୱେତପଦ୍ମା ନିଜ ମନର ସାମାନ୍ୟତମ ବ୍ୟସ୍ତତା ପ୍ରଭାତ କିମ୍ବା ଭାଇ, ଭାଉଜମାନଙ୍କୁ ଜାଣିବାକୁ ଦେଲାନାହିଁ ।

ଏକା ? ସାରା ଜୀବନ ଯେ ତୁମ ସାଙ୍ଗରେ ରହି ମୁଁ ଏକାକୀ ଜୀବନ ବିତାଇଛି । ଏ ପର୍ଯ୍ୟନ୍ତ କେତେ ବିଷୟ ଗୋପନ ରହିଛି ତୁମ, ମୋ ଭିତରେ । ତୁମ ସହ ତଥାପି ମୁଁ ସହଜ ହୋଇପାରିନାହିଁ । ଲୁଚେଇ ରଖିଛି ଅନେକ କିଛି ଐଶ୍ୱର୍ଯ୍ୟ ।

ଦୋଷ କରି କେହି ଯେ ଶାସ୍ତି ପାଏ ନାହିଁ ତା' ନୁହେଁ, ମାତ୍ର କାହିଁକି ମୋ ଓଠ ଖୋଲୁ ନାହିଁ ? ଶାସ୍ତିର ପରିଣାମ ଭୁଲ ଠାରୁ ଅଧିକ ହୋଇଯାଉ ନାହିଁ ତ ?

ଓଃ ଠାକୁରେ ପ୍ରଭାତଙ୍କୁ କେବେ ମୁଁ ସବୁ କହିପାରିବି ? କେବେ ଆସିବ ସେଦିନ ?

ଗାଡି ରହିଲା । ବଗିଚା ସାରା ଶୀତ ମଧ୍ୟାହ୍ନର ନରମ ଖରା ଫୁଲ, ପତ୍ରମାନଙ୍କରେ ବିଛେଇ ହୋଇ ପଡିଛି । ପ୍ରଭାତ ସମ୍ଭବତଃ ଅଳ୍ପ ସମୟ ପୂର୍ବରୁ ଆସି ତାକୁ ଅପେକ୍ଷା କରିଥିଲେ । ଡ୍ରାଇଭର୍ ଗାଡି ରଖି ଖାଇବାକୁ ଯିବା ସମୟରେ ଶ୍ୱେତପଦ୍ମାକୁ କହିଲା, 'ମୁଁ ଆସୁଛି, ମ୍ୟାଡମ୍ ।'

ଶ୍ୱେତପଦ୍ମା ବୈଠକ ଘରେ ପ୍ରଭାତଙ୍କୁ ନ ଦେଖି ସିଧା ଲୁଗା ନ ବଦଳାଇ ରୋଷେଇଘରେ ପଶିଲା । ଠିକ୍ ସେଇ ସମୟରେ ପ୍ରଭାତ ମୁହଁ ଧୋଇ ଗାଧୁଆଘର ପାଖରୁ ଆସୁଥିଲେ ।

'ତୁମେ ଆସ ତ । କିଛି ଖବର ନାହିଁ, ବାପଘରୁ ଆସି ଚାଲିଲ ରୋଷେଇ ଘରକୁ ।' ଦୁହେଁ ପରସ୍ପରକୁ ଚାହିଁ ହସିଲେ ।

ପରଦିନ ଖୁବ୍ ସକାଳୁ ଉଠି ଠାକୁରଘରୁ ଫୁଲଡାଲାଟି ନେଇ ବଗିଚାକୁ ଚାଲିଗଲା ଶ୍ୱେତପଦ୍ମା । ଇନ୍ଦୁ ଏବେ କାମକୁ ପାରୁନାହିଁ । ବୟସ ବଢ଼ିଲାଣି, ଦୁର୍ବଳ ହୋଇଯାଉଛି । ସମୟର ଶକ୍ତି ଡାକ୍ତରଙ୍କ ଔଷଧକୁ ହାର ମନେଇ ଦେଉଛି । ଏକଥା ପ୍ରତି ଅନ୍ୟମାନଙ୍କର ଦୃଷ୍ଟି ନ ଥିଲେ ମଧ ଶ୍ୱେତପଦ୍ମା ବୁଝିଛି । ଇନ୍ଦୁ ଯାହା ପାରିବ ସେତିକି କରିବ, ତା'କୁ କେହି କାମ ବରାଦ କରିପାରିବେ ନାହିଁ - ଏ କଥା ଯେ ଖୋଦ୍ ମା'ଙ୍କର ଆଦେଶ । ଏ କଥା ଅନ୍ୟ କାମ କରିବା ଲୋକମାନେ ଅମାନ୍ୟ କରିପାରନ୍ତି ନାହିଁ । ଏବେ ସକାଳୁ ଉଠି ଶାଶୂଙ୍କର ଖବର ନିଜେ ବୁଝେ ଶ୍ୱେତପଦ୍ମା । ନୂଆକରି ରହିଥିବା କାମ କରିବା ସ୍ତ୍ରୀଲୋକଟି ବୁଢ଼ୀଙ୍କର କାମ କରିବାକୁ ରାଜି ନୁହେଁ । ତେଣୁ ସେ ଦାୟିତ୍ୱଟି ଶ୍ୱେତପଦ୍ମାର ।

ସେଦିନ ସକାଳେ ବୁଢ଼ୀଙ୍କୁ ତକିଆ ଦେଇ ଆଉଜେଇ ବସାଇଦେଲା ଶ୍ୱେତପଦ୍ମା । ଚା' ପିଆଇ ସାରିବା ପରେ ଅକସ୍ମାତ୍ ଭାବି ନ ଥିବା ବିଷୟଟି ଘଟିଗଲା ।

ଗାୟତ୍ରୀ ଶିରାଳ ହାତରେ ଶ୍ୱେତପଦ୍ମାର ହାତ ଧରିପକେଇ ଥର ଥର କଣ୍ଠରେ କହିଲେ, 'ଅବିଚାର କରିଛି ।'

ଆଖି ଦୁଇଟି ସ୍ଥିର ହୋଇଯାଉଛି । କାହାକୁ ସେ ଖୋଜି ହେଉଛନ୍ତି ।

'ଏମିତି କ'ଣ ଦିଶୁଛନ୍ତି ସେ ? ଯାଆତ ଶୀଘ୍ର ବାବୁଙ୍କୁ ଡାକି ଦେ ।' ଶ୍ୱେତପଦ୍ମା ପ୍ରଭାତଙ୍କୁ ଦେଖି ସାହସ ପାଇଲା । ଡାକ୍ତରଙ୍କୁ ଡାକିବାକୁ ବେଳ ନାହିଁ । ସେ ଠାକୁରଘରୁ ଗଙ୍ଗାପାଣି ବୋତଲ ନେଇଆସି ତରତରରେ ପାଣି ଚାମଚେ ବଢ଼ାଇଦେଲା ପ୍ରଭାତଙ୍କୁ ।

'ଡେରି କରନା, ବୋଉଙ୍କ ପାଟିରେ ଦିଅ ।'

'ପୁଅ, ଶାସ୍ତି ... ଭୋଗିଲିଣି ... ।' ଅସ୍ପଷ୍ଟ କଥା ବୁଢ଼ୀଙ୍କର । ଉପରକୁ ଅଚଳ ହାତ ଦୁଇଟିକୁ ଉଠେଇବାର ବୃଥା ପ୍ରଚେଷ୍ଟା କରି କିଛି କହିବାକୁ ଚେଷ୍ଟା କରୁଥିଲେ ସେ । ପ୍ରଭାତଙ୍କୁ କରୁଣ ଦୃଷ୍ଟିରେ ଚାହିଁ ରହିଲେ ଗାୟତ୍ରୀ । ବ୍ୟସ୍ତ, ଅସ୍ଥିର ଶରୀର ସ୍ଥିର ହୋଇଗଲା, ମୁଣ୍ଡ ଢ଼ଳି ପଡିଲା । ତଥାପି ପ୍ରଭାତଙ୍କୁ କହିବାକୁ ଚାହୁଁଥିବା କଥାମାନ ଅଧା ରହିଗଲା । ସାର ଜୀବନର ଗ୍ଲାନି, ବହୁ ମାନସିକ, ଶାରୀରିକ ଯନ୍ତ୍ରଣାରୁ ମୁକ୍ତି ପାଇଗଲେ ଗାୟତ୍ରୀ ।

ପ୍ରଭାତଙ୍କ କଣ୍ଠ ଭାରୀ ହୋଇ ଆସୁଛି । ମୁଣ୍ଡ ନୁଆଇଁ ଠିଆହୋଇ ରହିଲେ ସେ କିଛି ସମୟ । ତା'ପରେ ବାହାରିଗଲେ ଖବର ଦେବାକୁ ଭଉଣୀମାନଙ୍କୁ, ଅରୁଣଙ୍କୁ, ଲୋପାକୁ । ମଂଜୁଳାକୁ ମଧ କହିବାକୁ ହେବ । ଆଉ କେତେଜଣ ଘନିଷ୍ଠ ବନ୍ଧୁଙ୍କୁ ଖବର ଦେବା ନିହାତି ଆବଶ୍ୟକ ।

ନିଃଶବ୍ଦ ଆଳାପରେ ପରସ୍ପରକୁ କିଛି ସମୟ ଚାହିଁ ଉଭୟ ସ୍ୱାମୀ, ସ୍ତ୍ରୀ ବଗିଚାରେ ପଡିଥିବା ଦୁଇଖଣ୍ଡି ପଥର ଉପରେ ମୂର୍ତ୍ତି ଦୁଇଟି ଭଳି ବସି ରହିଛନ୍ତି । ପ୍ରଭାତଙ୍କ ମନରେ ଅନ୍ୟ କିଛି ଦାୟିତ୍ୱର ବିଷୟ ପ୍ରବେଶ କରିପାରୁ ନ ଥିଲା ସେତେବେଳେ । ଶ୍ୱେତପଦ୍ମା ଏ ସମୟରେ କ'ଣ କହିପାରିବ ? ପ୍ରଭାତଙ୍କ ଭଉଣୀ, ଭିଣୋଇମାନେ ନ ଆସିବା ଯାଏ କିଛି ବି ଚିନ୍ତା କରି ହେବ ନାହିଁ ।

ମଂଜୁଳାକୁ ଅକସ୍ମାତ୍ ଦେଖି ସାହସ ପାଇଲା ଶ୍ୱେତପଦ୍ମା । ଦୁହେଁ ବୁଢ଼ୀଙ୍କ କୋଠରୀ ପର୍ଯ୍ୟନ୍ତ ନିରବରେ ଯାଉଥିଲେ ।

ଶ୍ୱେତପଦ୍ମାର ମନ ଅସ୍ଥିର । ମଂଜୁଳା ଧୀରେ କହିଲା,

'ହଁ, ଏ ଏକ ପର୍ଯ୍ୟାୟ ଶେଷ ହୋଇଗଲା । ଏମିତି ବଞ୍ଚିବାରେ କିଛି ଅର୍ଥ ଥାଉ ବା ନ ଥାଉ ବିଧିନିର୍ଦ୍ଦିଷ୍ଟ ଭାବେ ବସ୍ତୁଟିଏ ଭଳି ପଡି ରହିଲେ ସେ ବେଶ୍ କିଛି ବର୍ଷ । ହୁଏତ ଏକମାତ୍ର ନାତିର ବିବାହ ଦେଖିବାର ଇଛାଟା ତାଙ୍କୁ ବଞ୍ଚେଇ ରଖିଥିଲା । ନୁହେଁ, ଶ୍ୱେତା ?' ଶ୍ୱେତପଦ୍ମାର କଣ୍ଠରୁଦ୍ଧ ହେଲା । ସେ ନିରବ ରହିଲା ।

ତାଙ୍କ ଆଶା, ନିରାଶା ନେଇ କେହି ବ୍ୟସ୍ତ ନ ଥିଲେ ଏ ଘରେ । କେଉଁ ଅପକର୍ମରେ ଅନୁତପ୍ତ ସେ ଆତ୍ମାଟି ଅହରହ ଦଗ୍ଧ ହେଉଥିଲା, ଅସୁସ୍ଥ ହୋଇ ବିଛଣାରେ ପଡିବା ଦିନରୁ ମୁହୂର୍ତ୍ତକ ପାଇଁ ସେ ଶାନ୍ତି ପାଇପାରି ନ ଥିଲେ, ତାଙ୍କ ପ୍ରତି ଯେତେ ଯାହା କର୍ତ୍ତବ୍ୟ କଲେ ମଧ ସେଥିରେ ଯେ ଆଦୌ ଆନ୍ତରିକତା ନ ଥିଲା, ଏ ବିଷୟ କେବେହେଲେ ଶ୍ୱେତପଦ୍ମା ଅସ୍ୱୀକାର କରିପାରିବ ନାହିଁ ।

ଝିଅମାନେ ଆସିଲେଣି । ସେପାଖରେ କ୍ରନ୍ଦନର ରୋଳ । ପ୍ରଭାତ ରୁମାଲରେ ଆଖି ପୋଛୁଥିଲେ । ଲୁହ ଧାର ବାଧା ମାନୁ ନାହିଁ ।

ଗାୟତ୍ରୀ ପୁଷ୍ପର ସଂଭାର ମଧରେ ନିଶ୍ଚିନ୍ତ ମହାନିଦ୍ରାରେ ଅନନ୍ତ ବିଶ୍ରାମ ନେଇଥିଲେ । କିଏ ଜାଣେ ତାଙ୍କ ଅଶରୀରି ଆତ୍ମା ଘୂରିବୁଲି ଧୀର ପବନ ସହ ସ୍ୱର ମିଳେଇ କହୁଥିଲା, 'ଏମିତି କାହିଁକି ସବୁ ହେଉଛ ? ମୁଁ ତ ମୁକ୍ତି ପାଇଛି ଏ ସାଂସାରିକ ମାୟାରୁ ।'

ଗାୟତ୍ରୀ ଯିବାପରେ ଘରର ବିଶେଷ କିଛି ପରିବର୍ତ୍ତନ ହେଲା ନାହିଁ । ସକାଳ ହେଲେ ଶ୍ୱେତପଦ୍ମା, ପ୍ରଭାତ ଚା' ପିଇସାରି ଘଣ୍ଟାଏ ବଗିଚାରେ ବୁଲାବୁଲି କରନ୍ତି । ପରେ ପରେ ଶ୍ୱେତପଦ୍ମା ଗାଧୋଇ ସାରି ବସନ୍ତି ପ୍ରାର୍ଥନା ଘରେ । ଏ ଅଭ୍ୟାସ ବହୁକାଳରୁ ବିବାହ ପୂର୍ବର । ଏହି ଅଧ ଘଣ୍ଟାକ ସେ ନିଜ ପାଇଁ ରଖନ୍ତି ଦିନ ଚର୍ଯ୍ୟା ଆରମ୍ଭ ନ ହେଉଣୁ । ଏଥିରେ କଦାଚିତ୍ କେବେ ବ୍ୟତିକ୍ରମ ଦେଖାଯାଏ ।

କେଉଁ ଠାକୁରଙ୍କ ପାଖରେ ସେ ମନ ଲଗାନ୍ତି ? ଧୀର, ସ୍ଥିର ଚିତ୍ତରେ ସେତିକି ସମୟ ବିତାଇ ନ ପାରିଲେ ସାରାଦିନ ଅଶ୍ୱସ୍ତିରେ ହିଁ ଭରିଯାଏ । ନିଜକୁ ଖୋଜି ପାଇବାର ଏହା ଏକ ମାଧ୍ୟମ । ଜୀବନ ବଂଚିବା ନିମନ୍ତେ ମନୋବଳ ସଂଗ୍ରହ କରିନେବା ପାଇଁ ଏହା ଏକ ତପସ୍ୟା । ଏମିତି ବହୁକଥା ଏକମାତ୍ର ଘନିଷ୍ଠ ମଂଜୁଳାକୁ କହେ ଶ୍ୱେତପଦ୍ମା ।

ମଂଜୁଳା ଶର୍ମା ସହ କିଭଳି ବନ୍ଧୁତା ହେଲା ? ତା' ମଧ୍ୟ ଅତ୍ୟନ୍ତ ଅନ୍ତରଙ୍ଗ ଭାବରେ ?

ସେ ଏକ ଅଧ୍ୟାୟ । ଏ ପର୍ଯ୍ୟନ୍ତ କେହି ସେ ବିଷୟ ଚିନ୍ତା କରି ନାହିଁ । ସମସ୍ତେ ଜାଣନ୍ତି ମଂଜୁଳା, ଶ୍ୱେତପଦ୍ମାର ବାନ୍ଧବୀ । ବାସ୍ - ସେତିକି ମାତ୍ର । କେବେ ଯଦି ସେ ପ୍ରଶ୍ନ ଉଠେ, ସମାଜର କାଠଗଡାରେ ଠିଆହୋଇ ଯଥାର୍ଥ ଉତ୍ତର ଦେବ ଶ୍ୱେତପଦ୍ମା ।

ଓଡିଶାର ବାହାରେ କେଉଁ ସହରରେ ମଂଜୁଳାଙ୍କ ଘର କେହି କେବେ ପଚାରିନାହିଁ । ବାହାରେ କେଉଁ ପ୍ରଖ୍ୟାତ ବିଶ୍ୱବିଦ୍ୟାଳୟର ସାମାଜିକ ବିଜ୍ଞାନରେ ସ୍ନାତକୋତ୍ତର ଡିଗ୍ରୀ ହାସଲ କରିବା ପରେ ସାମ୍ବାଦିକତାର ବିଶେଷ ପାଠ୍ୟକ୍ରମରେ କିଛି ଦିନ ଯୋଗଦେଇଥିଲେ ମଂଜୁଳା । ସାମ୍ବାଦିକତା ଏବଂ ସମାଜସେବା ତାଙ୍କ ଜୀବନର ଲକ୍ଷ୍ୟ ଥିଲା । କେହି କେହି କହନ୍ତି ଜଣେ ଧନୀ, ସଂଭ୍ରାନ୍ତ ଘରର କନ୍ୟା ମଂଜୁଳା ଶର୍ମା । ଅନ୍ୟ କେହି କହନ୍ତି ଅଳ୍ପ ବୟସରେ ସ୍ୱାମୀଙ୍କୁ ହରାଇ ନିଜର ଶିଶୁ କନ୍ୟା ଲୋପାକୁ ନେଇ ଓଡିଶା ଚାଲି ଆସିଛନ୍ତି ସେ । ବହୁତଦିନ ହେବ ଓଡିଶାରେ ବସବାସ କରୁଛନ୍ତି ସେ ।

ନିରାଡମ୍ବର ଜୀବନ, ସମାଜସେବା ହିଁ ମୂଳ ଲକ୍ଷ୍ୟ ତାଙ୍କର । ଏବଂ ଦେଶର

ବିଭିନ୍ନ ପତ୍ରପତ୍ରିକାରେ ସାମାଜିକ ସମସ୍ୟାମାନଙ୍କର କରାଳ ଚିତ୍ର ତାଙ୍କର ଲେଖନୀରେ ଜୀବନ୍ତ ରୂପ ନେଇ ପ୍ରକାଶ ପାଏ । ଦୀର୍ଘ ବାଇଶ, ତେଇଶ ବର୍ଷ ହେବ ଜଣେ ପ୍ରଖ୍ୟାତ ବ୍ୟକ୍ତି, ଉଚ୍ଚକୋଟୀର ସାଂବାଦିକ ଭାବରେ କେବଳ ଏ ରାଜ୍ୟରେ ନୁହଁ ସାରା ଦେଶରେ ସେ ପରିଚିତ । ମାତ୍ର ରାଜନୀତିଠାରୁ ଦୂରେଇ ରହନ୍ତି ମଂଜୁଳା । ଅଥଚ ବିଭିନ୍ନ ଦଳର ରାଜନୈତିକ ନେତାମାନେ ତାଙ୍କର ସୁପରାମର୍ଶ ଗ୍ରହଣ କରନ୍ତି ।

ସେମାନଙ୍କର ଦୋଷ ଦୁର୍ବଳତା ଦେଖାଇ ଦିଅନ୍ତି ସେ । କୋମଳ କଣ୍ଠରେ ବୁଝାଇ କହନ୍ତି, 'ଦେଖନ୍ତୁ, ଆପଣମାନେ ଲୋକଙ୍କୁ ବୁଝନ୍ତୁ । ସେମାନଙ୍କ ସମସ୍ୟା ହୃଦୟଙ୍ଗମ କରନ୍ତୁ । କାହିଁକି ପୃଥିବୀରେ କେତୋଟି ଦେଶ, ମୁଖ୍ୟତଃ ଭାରତର ଜନସଂଖ୍ୟା ଦ୍ରୁତଗତିରେ ବୃଦ୍ଧି ପାଇବାରେ ଲାଗିଛି ? ଆଜି ଆମର କ୍ଷୁଦ୍ର ରାଜ୍ୟଟି ଜନସଂଖ୍ୟା ବୃଦ୍ଧି ନେଇ ଭାରାକ୍ରାନ୍ତ ହୋଇପଡିଛି । ଅଶିକ୍ଷା ତା'ର ମୂଳ କାରଣ ନୁହେଁ କି ? ଦାରିଦ୍ର୍ୟ, ଶିକ୍ଷାହୀନତା ନେଇ ସେମାନେ ହିଂସ୍ର ହୋଇଉଠୁଛନ୍ତି । ଅନ୍ୟାନ୍ୟ ବହୁ ସମସ୍ୟା ସହ ଯୌତୁକଜନିତ ବଧୂହତ୍ୟା ଭଳି ଜଘନ୍ୟ ଅପରାଧ ନିମନ୍ତେ ଶାସ୍ତିର ବ୍ୟବସ୍ଥା ଉପରେ ସେଭଳି କିଛି ଗୁରୁତ୍ୱ ପ୍ରଦାନ କରାଯିବାଭଳି ମୋର ମନେହୁଏନା । ମୁଁ ବିଷଦ୍ ଭାବେ ଆଲୋଚନା କରୁନାହିଁ । ଆପଣ, ମୁଁ ସମସ୍ତେ ସବୁ ଜାଣୁଛୁ ? କ'ଣ ବା କରୁଛୁ ଆମେ ? ଆପଣମାନେ ଲୋକପ୍ରତିନିଧି । ନିରୀହ ଲୋକଙ୍କ ସମସ୍ୟା ନିଜ ଆଖିରେ ଦେଖି ପ୍ରତିକାର କରନ୍ତୁ । ମୁଁ ତ ସାଧାରଣ ବ୍ୟକ୍ତିଟିଏ; ପାୱାର, ପୋଜିସନ୍ ମୋର ନାହିଁ କିମ୍ବା ତା' ମୁଁ ଆଦୌ ଚାହେଁ ନାହିଁ ।

'ଆପଣମାନେ ସେମାନଙ୍କ ଓଠରେ ସାମାନ୍ୟ ହସ ଦିଅନ୍ତୁ । ସେ ଶକ୍ତି ଆପଣମାନଙ୍କ ପାଖରେ । ମୁଁ ଯାହା ଅନୁଭବ କରିବି ଲେଖିଯିବି । ଦୁସ୍ଥ ବ୍ୟକ୍ତିଙ୍କୁ ସୁଖୀ ହେବାର ଦେଖିଲେ ଆନନ୍ଦିତ ହେବି । କିନ୍ତୁ ଆଉ କ'ଣ କରିପାରିବି କୁହନ୍ତୁ ? ସେହି ଲେଖନୀ ହିଁ ମୋର ଶକ୍ତି ।'

ଯେତେ ଯାହା କହିଲେ ବି ନିଜକୁ ଅତି ସାଧାରଣ ବ୍ୟକ୍ତିଟିଏ ଭାବେ ସାବ୍ୟସ୍ତ କଲେ ବି ସମସ୍ତେ ଜାଣନ୍ତି, ମଂଜୁଳା ଶର୍ମା ମହାଶକ୍ତିମୟୀ । ତାଙ୍କର ପଦଟିଏ କଥାର ଯଥେଷ୍ଟ ମୂଲ୍ୟ ଅଛି ।

ପଦପଦବୀ ଥିବା ମନ୍ତ୍ରୀ, ଅଫିସରମାନଙ୍କ ସିଂହାସନ ଟଳିଯାଏ ତାଙ୍କ କଲମ ଗାରରେ । ସ୍ୱଚ୍ଛ ସରଳ ବ୍ୟକ୍ତିଟି ଅସାଧୁ ବ୍ୟକ୍ତିର ଶକ୍ତିଶାଳୀ ଦୁର୍ଗକୁ ମଧ ଧ୍ୱଂସ କରିଦେଇପାରେ ।

ମଂଜୁଳାଙ୍କ ଅନୁଭବ, ବିଚାର ଓ ଦୃଷ୍ଟିର ଫୋକସ୍ ଅତ୍ୟନ୍ତ ତୀକ୍ଷ୍ଣ । ମଣିଷକୁ ଚାହିଁଦେଇ ସେ ପଢ଼ି ନିଅନ୍ତି ତା' ମନ ଭିତରର ଭାଷା । ତେଣୁ ତାଙ୍କ କଲମରେ ପ୍ରାଞ୍ଜଳ ଭାବରେ ପରିସ୍ଫୁଟ ହୁଏ କିଛି ଅନ୍ୟାୟ, ଅନୀତି ଏବଂ ଦୁଃଖୀ, ଅସହାୟମାନଙ୍କ ଅନ୍ତରାତ୍ମାର କ୍ରନ୍ଦନର ଚିତ୍ର ।

ସେ ଅମୃତମୟୀ । ତାଙ୍କ ମହୁଝରା ଆନ୍ତରିକ ଭାଷା ହିଂସ୍ର, ଦୁର୍ଦ୍ଦାନ୍ତ, ଅଶାନ୍ତ ପଶୁକୁ ଶାନ୍ତ କରାଏ । ସେମାନେ କେହି ତାଙ୍କର କ୍ଷତି କରିପାରନ୍ତି ନାହିଁ । ମଂଜୁଳା ସମସ୍ତଙ୍କୁ ନିଜର କରନ୍ତି ।

ସେହି ଚଳଚଞ୍ଚଳା ମଂଜୁଳାର ଏବେ କ'ଣ ହୋଇଛି ? ସେ କାହାକୁ ସାକ୍ଷାତ କରିବାକୁ ମନା କରି ଦେଉଛି ।

ଲେଖାଲେଖି ତ ପ୍ରାୟ ବନ୍ଦ । ଫୋନ୍ ମଧ୍ୟ ନିଜେ ଧରୁନାହିଁ । ସେ ଅସୁସ୍ଥ ? ତା' ତ କେହି କହୁନାହିଁ ।

ଶ୍ୱେତପଦ୍ମା ବିଚଳିତ ହେଲା ।

ଅରୁଣର ବିବାହ, ଶାଶୂଙ୍କର ଦେହାନ୍ତ, ଫ୍ୟାକ୍ଟ୍ରିର କିଛି ସମସ୍ୟା ନେଇ ବ୍ୟଥିତ ହୋଇଥିଲେ ସେ ଦୁହେଁ । କିଛିଦିନ ପାଇଁ ଲୋପା ପୁଣି ଥରେ ଦିଲ୍ଲୀ ଯାଇଥିଲା । ତା'ର ବି ଖବର ନାହିଁ । ଏସବୁ ମଧ୍ୟରେ ହଠାତ୍ ଦିନେ ପ୍ରଭାତ ପ୍ରସ୍ତାବ ଦେଲେ, 'ଚାଲ ଶ୍ୱେତା, କିଛିଦିନ ଅଜ୍ଞାତବାସରେ ପଳାଇବା । ମନ ଭଲ ଲାଗୁନାହିଁ ।'

ସବୁବେଳେ ଜଂଜାଳଗ୍ରସ୍ତ ଜୀବନ କାହାକୁ ବା ଭଲ ଲାଗେ ? ଇଣ୍ଡଷ୍ଟ୍ରୀ ହେଲା ନିଜ ଇଚ୍ଛାରେ । ଅଥଚ ଦିନକୁ ଦିନ ସଂଭାଳିବା କଷ୍ଟକର ହୋଇପଡୁଛି । ଫ୍ୟାକ୍ଟ୍ରିର ଆଧୁନିକୀକରଣ, ଉନ୍ନତିର ଶିଖର ସୀମାକୁ ଉଠାଇଲେ ବି ପରିଚାଳନା ପାଇଁ ସେହି ଉପଯୁକ୍ତ ମ୍ୟାନ୍‌ପାୱାରର ଅଭାବ ନେଇ ପ୍ରଭାତଙ୍କର ଚିନ୍ତା । ତାଙ୍କୁ ଯେ ଅଧିକ ଦେଖାଦେଖି କରିବାକୁ ହେଉଛି ।

ହିମାଳୟ ପାଖରେ ପାହାଡୀ ଗାଁଟିଏ, ଶାନ୍ତ ପ୍ରକୃତିର ସରଳ ସୁନ୍ଦର ରୂପ । ସେହି ପ୍ରାକୃତିକ ବୈଭବ ମଧ୍ୟରେ କିଏ ତିଆରି କରିଥିଲା କାଠ ନିର୍ମିତ କୋଠରୀ

କେତୋଟି । ଅରଣ୍ୟ ମଧ୍ୟରେ କିଏ ସେମାନଙ୍କ ପାଇଁ ସରଳ ଭାବରେ ସୁସଜ୍ଜିତ କରି ରଖିଥିଲା ଏହି ଅତିଥିଶାଳଟି ? ବିସ୍ମିତ ହୁଏ ଶ୍ୱେତପଦ୍ମା ।

ପାହାଡ, ଝରଣା, ସବୁଜବୃକ୍ଷରାଜି, ଜଙ୍ଗଲିଫୁଲର ମହକ ମଧ୍ୟରେ କେତେବେଳେ ସୂର୍ଯ୍ୟ ଉଦୟ ହୋଇ ଅସ୍ତ ହୋଇଯାଏ । ସମୟ ଧୀର ପଦକ୍ଷେପରେ ସେମାନଙ୍କୁ ଏକାକୀ ରଖି ବିଦାୟ ନେଇଯାଏ, ତା' ଜାଣନ୍ତି ନାହିଁ ଶ୍ୱେତପଦ୍ମା, ପ୍ରଭାତ । ଏସବୁ ଦେଖୁ ଦେଖୁ ଖୁସିରେ ଆତ୍ମହରା ହୁଏ ଶ୍ୱେତପଦ୍ମା ।

ଏଠି ଘଣ୍ଟା ଦେଖାହୁଏ ନାହିଁ । ଅତିଥିଶାଳାର ଲୋକଟି ମୋଟା ଅର୍ଥର ବକ୍ସିସ୍ ପାଇବା ଆଶାରେ ଅଶେଷ ଯତ୍ନର ସହ ସାବ୍, ମେମ୍ସାବ୍ଙ୍କର ଖାଦ୍ୟ, ପେୟ, ଅନ୍ୟାନ୍ୟ ସୁଖ, ସୁବିଧାର ବ୍ୟବସ୍ଥା କରାଇଛି । ବିଭିନ୍ନ ଚିନ୍ତା ସବୁକୁ ଦୂରେଇ ଦେଇ ମାତ୍ର ପନ୍ଦରଟି ଦିନର ସମୟ ହାତ ପାହାନ୍ତାରୁ କିଭଳି ଧୀରେ ଖସି ଚାଲିଗଲା, ଆଦୌ ଜାଣି ପାରିଲେ ନାହିଁ ସ୍ୱାମୀ, ସ୍ତ୍ରୀ ଦୁହେଁ ।

ମାତ୍ର ଏତେ ବେଶୀ ସୁଖ ମଧ୍ୟରେ କେବେ କେବେ କରୁଣ ସ୍ୱରଟିଏ ଝଂକୃତ ହୁଏ ଶ୍ୱେତପଦ୍ମାର ମନରେ । ମନ ବିଷଣ୍ଣ ହୁଏ । ଇଚ୍ଛାହୁଏ ପ୍ରଭାତଙ୍କୁ ମନ ଖୋଲି କହିଦିଅନ୍ତା ସେଇ ସଂଚିତ ସୁଖ, ଦୁଃଖର ପର୍ଯ୍ୟାୟଟି । ତା' ପାରେନାହିଁ ସେ । ଆସିବା ପୂର୍ବରୁ ମଂଜୁଳାକୁ ଏଇ କଥାଟି ପଚାରି ଟିକିଏ ଉତ୍ସାହ, ସାମାନ୍ୟ ସାହସ ସଂଚୟ କରିବା ପାଇଁ ଆଶା କରିଥିଲା ସେ । ମାତ୍ର ତାହା ହୋଇ ପାରିଲା ନାହିଁ ।

ଥାଉ - ଘରକୁ ଫେରିଆସେ, କାହିଁକି ବା ଏତେ ବେଶୀ ବ୍ୟସ୍ତ ହେବି ? ଏଠି କେତେ ଖୁସୀ ଅଛନ୍ତି ପ୍ରଭାତ ? ଯଦି ସେ ପଚାରନ୍ତି, 'ଶ୍ୱେତା, ଏ କ'ଣ କଲ ? ଏତେ ସବୁକଥା ମୋ ପାଖରୁ ଗୋପନ ରଖିଥିଲ ? ମୋ ଭଲ ପାଇବାରେ କ'ଣ ବା ତ୍ରୁଟି ଦେଖିଲ ଯେ ଏତେ ବେଶୀ ଶାସ୍ତି ଦେଲ ମୋତେ ?'

ଚମକି ଉଠେ ଶ୍ୱେତପଦ୍ମା । ନା - ଟିକିଏ ବଂଚିଯାଏ ଶାନ୍ତିରେ ।

'ମଂଜୁ କିମିତି ଅଛୁ ? ଲୋପା ଖବର କ'ଣ ?'

'ଜାଣି ନାହିଁ । ମୁଁ ଠିକ୍ ଅଛି । ହଉ, ଏବେ ଫୋନ୍ ରଖୁଛି ।

'ମଂଜୁ'

ସେ ଫୋନ୍ ରଖିସାରିଛି । ଏ କ'ଣ ? ହୋଇପାରେ କିଏ ଅନ୍ୟମାନେ ଥିବେ । କିଛି ଲେଖାଲେଖିରେ ବ୍ୟସ୍ତ ଥିବ । ଏମିତି ଚାଲିଗଲା କେତେଦିନ ।

କ'ଣ ହୋଇଛି ମଂଜୁର ? ଲୋପା ମୋର ଭଲ ଅଛି ତ ? ଫୋନ୍ ଧରୁନାହିଁ କି କିଛି କହୁ ନାହିଁ ଯେ !

ଫୋନ୍ ଧରିଲା ମଂଜୁର ସେକ୍ରେଟାରୀ ।

'ମ୍ୟାଡମ୍ ନାହାଁନ୍ତି କି ? ମୁଁ ଶ୍ୱେତପଦ୍ମା କହୁଛି, କହିବ ।'

'ମୁଁ ଆପଣଙ୍କୁ ଜାଣିଛି, ମ୍ୟାଡମ୍ । ଆପଣଙ୍କ ନାଁ ଶୁଣିଲେ ସେ ଦୌଡ଼ି ଆସି ଫୋନ୍ ଧରିଥାଆନ୍ତେ । କିନ୍ତୁ ତାଙ୍କର କ'ଣ ହୋଇଛି ଜାଣିପାରୁନାହିଁ । ଦେହ ତ ସୁସ୍ଥ ଅଛି । ଅଥଚ ସବୁ ଆପଏଣ୍ଟମେଣ୍ଟ୍ କ୍ୟାନ୍‌ସଲ୍ କରିଦେଉଛନ୍ତି । ପ୍ରାୟ ଅନେକ ସମୟ ବିଛଣାରେ ପଡ଼ି ରହୁଛନ୍ତି । ନୋଚେତ୍ ନିରବରେ କାଉଚ୍‌ରେ ଅଧାଶୁଆ ଅବସ୍ଥାରେ ବସି ରହି ବହି ଖଣ୍ଡିଏ ଧରି କ'ଣ ଭାବୁଛନ୍ତି ।'

'ପାଖରେ ଝିଅ ଅଛି ?'

'ଅଛନ୍ତି । ଏବେ ଅଳ୍ପ ଦିନ ପାଇଁ ବାହାରକୁ ଯାଇଛନ୍ତି ।'

ଫୋନ୍ ରଖି ଶ୍ୱେତପଦ୍ମା ନିରବରେ କ'ଣ ଭାବିହେଲା । ପରେ ପରେ ପ୍ରଭାତଙ୍କୁ ଫୋନ୍ ଲଗାଇଲା,

'ଟିକେ ଡ୍ରାଇଭରକୁ ପଠାଇବ ?'

'ସିଓର ।'

'କିନ୍ତୁ ମୁଁ ସହର ବାହାରକୁ ନେବି । ଅଧିକ ସମୟ ହୋଇପାରେ ।'

'ତୁମ ସହର ବାହାର ତ ମଂଜୁଳା ଶର୍ମା ।' ହସିଲେ ପ୍ରଭାତ ।

'ଠିକ୍ ଅଛି, ଶ୍ୱେତା, ଗୋଟିଏ ସର୍ତ୍ତରେ ପଠାଇବି ।'

'ଓହୋ କୁହ ବାବା, ଏମିତି ଡେରି କଲେ, ତୁମ ସାଙ୍ଗରେ ଆସି ଲଞ୍ଚ୍ ଖାଇପାରିବି ନାହିଁ । ତୁମେ ଏକା ବସି ଖାଇବ ।'

'କିନ୍ତୁ ସର୍ତ୍ତଟା ଶୁଣିଲ ନାହିଁ ଯେ ? ମଂଜୁଳାଙ୍କ ଘରକୁ ଯାଇପାର । କିନ୍ତୁ ମୋତେ ଛାଡ଼ି ଆଉ କୋଉ ପ୍ରେମିକଙ୍କ ସଙ୍ଗେ ଯଦି ପଳେଇ ଯିବ ନା ମୁଁ ଦେବଦାସ୍ ହୋଇଯିବି ।'

'ହେ ସେଠି କ'ଣ କାମଦାମ ନାହିଁକି ? କିଏ ଶୁଣୁଥିବ । ରଖିଲି ମୁଁ ।'

ତରତର ହୋଇ ବାହାରିପଡିଲା ଶ୍ୱେତପଦ୍ମା । ପୋର୍ଟିକୋରେ ଡ୍ରାଇଭର୍ ଗାଡି ପାର୍କ କରୁଥିଲା । ଗାଡି ରଖି ତରତରରେ ସେ କାର୍‌ର ପଛ କବାଟ ଖୋଲି ଧରିଲା । ଡ୍ରାଇଭର୍‌କୁ ଶବ୍ଦଟିଏ କହିବାର ଆବଶ୍ୟକ ହୋଇନାହିଁ, ସେ ଜାଣିଛି ମେମ୍‌ସାବ୍ ଏକା କୁଆଡେ ଯାଆନ୍ତି । ମଂଜୁଳା ମେମ୍‌ସାବ୍‌ଙ୍କ ଘର ।

'ଆରେ ଶ୍ୱେତା, ହଠାତ୍ ଏମିତି ?'

'ହଠାତ୍ କାହିଁକି ? କେତେଦିନ ହେବ ପାଉନି ତୋତେ ।'

'ଫୋନ୍ କଲେ ତ ଫୋନ୍ ଧରୁନୁ ! କ'ଣ ହୋଇଛି ତୋର ?'

'କିଛି ନାହିଁ । ଆ, ବସ୍ ।'

ମଂଜୁଳାର ଶୁଖିଲା ମୁହଁରେ ହସ ଅସ୍ୱସ୍ତିକର ମନେହେଲା ଶ୍ୱେତପଦ୍ମାକୁ ।

'କହିଲୁ କ'ଣ ହୋଇଚି ?'

'ଚାଲ, ଉପର ଘରେ, ଲୋପା ରୁମ୍‌ରେ ବସି କଥାବାର୍ତ୍ତା କରିବା ।'

ଟିକିଏ ସମୟ ନିରବ ରହି କଥା ଆରମ୍ଭ କଲା ମଂଜୁଳା । ତା' ଆଖିରୁ ଝରିପଡିଲା ଦୁଇଟୋପା ଲୁହ ।

'କ'ଣ ହେଇଛି, ମଂଜୁ ? ମୋତେ କହ', ଶ୍ୱେତପଦ୍ମା ବ୍ୟସ୍ତ ହୋଇପଡିଲା ।

'ରୋଗଟା ଏବେ ତା' ପାଖରୁ ମୋତେ ଡେଇଁଛି ।'

'ଲୋପା ଠିକ୍ ଅଛି ତ ଏବେ ?'

'ସବୁଠି ସବୁ ଠିକ୍ ଚାଲିଛି । ଶ୍ୱେତା, ତୋତେ ତ ମୁଁ ଖୋଜୁଥିଲି । କିନ୍ତୁ ଫୋନ୍ କରିବାର ଶକ୍ତି ନ ଥିଲା ମୋ ପାଖରେ । ମୁଁ ଦୁର୍ବଳ ହୋଇ ପଡିଛି ।'

ଶ୍ୱେତପଦ୍ମା କିଛି ନ କହି ଧୈର୍ଯ୍ୟର ସହ ଅପେକ୍ଷା କଲା ମଂଜୁଳାର କଥା ଶୁଣିବା ପାଇଁ ।

'ଶ୍ୱେତା, ତୁ ରୋଷନ୍ ପିଲାଟିକୁ ଦେଖିଥିବୁ । ସେମାନେ ପରସ୍ପରକୁ ଗୋଟାଏ ମୁହୂର୍ତ୍ତ ପାଖରୁ ଛାଡୁ ନାହାଁନ୍ତି । ଲୋପାର ତା' ସହ ବନ୍ଧୁତା ମଧ ଅନୁମାନ କରିପାରିଥିବୁ ।'

'ପାଠ, ରିସର୍ଚ୍ଚ କାମ, ସେମିନାର, କନ୍‌ଫରେନ୍ସ, ଦେଶ, ବିଦେଶ ସବୁଠି ସାଥିହୋଇ ବୁଲିଲେ । ଜୀବନ ସାଥି ହେବାରେ ଆପତ୍ତି କରୁଛୁ କାହିଁକି ?'

ଶ୍ୱେତପଦ୍ମାର କଥା ଶୁଣି ନିରବ ରହିଲା ମଂଜୁଳା । ଟିକିଏ ପରେ କହିଲା,

'ମୋତେ ବୁଝିଲୁନି, ଶ୍ୱେତା । ଲୋପା, ରୋଷନ୍‌ଙ୍କର ବିବାହ ହେଲେ ସବୁଠୁ ବେଶୀ ଖୁସୀ ମୁଁ ହେବି । କିନ୍ତୁ....'

'କ'ଣ ହେଇଚି କହ ?'

'ସେଇ କଥା ପଚାରି ପଚାରି ସାତଦିନ ଚାଲିଗଲା । ଝିଅଟା ମୁହଁ ଶୁଖେଇଥାଏ । ବାଧ୍ୟତଃ ତା'ର ଯାହା କାମ କରୁଥାଏ । ଶେଷକୁ ଦିନେ କାନ୍ଦି ପକେଇଲା ।'

'ଲୋପା କାନ୍ଦିଲା ?'

'ତାରି ହସ ପାଇଁ ମୋର ସବୁ କଥା । ଅଥଚ.... ।'

'କହ, ମଂଜୁ । ମୋର ଧୈର୍ଯ୍ୟ ନାହିଁ ।'

ମଂଜୁଳା କୋହ ସଂଭାଳି ପାରିଲା ନାହିଁ ।

ଶ୍ୱେତପଦ୍ମା କିଛି ବୁଝି ନ ପାରି ନିରବରେ ବସି ରହିଲା ।

ଆଖି ପୋଛି ମଂଜୁଳା କହିଲା, 'ବହୁତ କଷ୍ଟରେ ଦିନେ ଲୋପା ମୋତେ କହିଲା - ମା, ରୋଷନ୍‌ର ବାପା, ମା' ମୋର ବଂଶ ପରିଚୟ ଜାଣିବାକୁ ଚାହୁଁଛନ୍ତି । ତୁ ତ କେବେ ବି ମୋତେ ମୋ ବାପାଙ୍କ ନାମ କହିଲୁ ନାହିଁ । ପିଲାଦିନେ ଭୁଲେଇଦେଇ କ'ଣ ସବୁ କହି ଦେଉଥିଲୁ । ବୁଦ୍ଧି ହେବା ପରେ ତୁ ମନ ଦୁଃଖ କରିବୁ ଭାବି ମୁଁ ବି ଜାଣି ଜାଣି ତୋତେ କେବେ ବି ପଚାରି ନାହିଁ ।'

ଶ୍ୱେତପଦ୍ମା, ମଂଜୁଳା ପରସ୍ପରକୁ କୁଣ୍ଢେଇ ଧରି କାନ୍ଦି ପକାଇଲେ ।

'କ'ଣ କରିବି, ଶ୍ୱେତା ? ମୋତେ ବୁଦ୍ଧି ବାଟ ଦେଖାଯାଉନାହିଁ । କିମିତି କ'ଣ କହିବି ? ସାନବେଳୁ ଏତିକିଟିଏ କଲି, ଏବେ ତାକୁ ମିଛ କହିବି ?'

ଶ୍ୱେତପଦ୍ମା ଆଖି ପୋଛି ବାଲକୋନିକୁ ଉଠି ଆସିଲା । ବାହାରର ଖରାରେ ସେ·ଠିଆହୋଇ ପାରିଲା ନାହିଁ । ଭିତରକୁ ଯାଇ ସୋଫାର ଗୋଟିଏ କୋଣରେ ନିରବରେ ବସି ରହିଲା ସେ ।

'ପରେ ଆମେ କଥାବାର୍ତ୍ତା କରିବା । ଆଜି ବାଧ୍ୟତଃ ମୋତେ ଅଳ୍ପଦିନ ପାଇଁ ବମ୍ବେ ଯିବାକୁ ହେଉଛି । ନେ ।' ପାଣି ଗ୍ଲାସ୍‌ଟା ଶ୍ୱେତାକୁ ଧରେଇ ଦେଇ ମଂଜୁଳା ସହଜ ଭାବରେ କହିଲା ।

'ମୋତେ ଏମିତି ଆଶ୍ଚର୍ଯ୍ୟରେ ଚାହିଁଛୁ କ'ଣ ଶ୍ୱେତା, ଶୀଘ୍ର ଯା' । ପ୍ରଭାତଙ୍କୁ ଅଫିସ୍‌ରୁ ନେଇ ଘରକୁ ଫେରିବୁ କହୁଥିଲୁ ନା ? ଡେରି ହେଉଛି ଯେ ।'

'ହଁ, ଯିବି ତ ।'

ଶ୍ୱେତପଦ୍ମା ଥଣ୍ଡା ପାଣି ଗ୍ଲାସ୍‌ଟା ଓଠ ପାଖରେ ଲଗାଇଲା । ହଠାତ୍ ଉଠିଯାଇ ଗାଧୁଆଘର ବେସିନ୍ ପାଖରେ ମୁହଁ ହାତ ଧୋଇନେଲା । ମୁହଁଟା ସଫା କରିନେଇ ଓଠରେ ଲିପ୍‌ଷ୍ଟିକ୍ ହାଲକ୍ ଭାବରେ ଛୁଆଇଁଦେଲା । ଏଥର ହସି ହସି ବାହାରି ଆସିଲା କବାଟ ଆଉଜେଇ ।

'ମୋର ଏବେ କିଛି ଚିନ୍ତା ନାହିଁ, ମଂଜୁ । ଆମ ପିଲା ଆମ ପାଇଁ କାହିଁକି ହଇରାଣ ହେବେ ଲୋ ? ଚାଲ୍‌ତ ମୁଁ ଯିବି ରୋଷନ୍ ଘରକୁ । ସବୁ କଥା ମୁଁ କହିବି । ସତ୍ୟର ଅପଳାପ କରିବା କାହିଁକି ? ସବୁ ଠିକ୍ ହୋଇଯିବ । ଲୋପା ମୋର ସୁଖରେ ଘର ସଂସାର କରିବ ।'

'ଚଳଚ୍ଚିତ୍ର ବା ନାଟକର ଶେଷ ଦୃଶ୍ୟ ଦେଖିଲୁ କି ? ଏ ପରା ଜୀବନ । ବ୍ୟକ୍ତିର ଜୀବନ ସହ ଏ ସମାଜର ସଂପର୍କ ରହିଛି ଯେ । ତୁ କିଏ ? ଲୋପାର ତ ତୁ କେହି ନୁହଁ । ଯାହା କହିଲେ ସେମାନେ କାହିଁକି ବିଶ୍ୱାସ କରିବେ ? ସେମାନେ ଯାହା ପଚାରିଛନ୍ତି, ଏହା ତ ସାଧାରଣ ଭାବରେ ସମସ୍ତେ ଜାଣିବାକୁ ଚାହିଁବେ । ଭାବୀ କୂଳବୋହୂର ବଂଶ ପରିଚୟ ପଚାରିବା ଅପରାଧ ନୁହେଁ ତ । ସେମାନେ ଭଦ୍ର, ସଂଭ୍ରାନ୍ତ ପରିବାର । ସେମାନେ ଆଦର୍ଶବାଦୀ ହେବା ଉଚିତ, ଆମେ ଏମିତି ଆଶା କରିବା ଠିକ୍ ନୁହେଁ । ତୁ ଯାଆ ତ କିଛି ନା କିଛି ରାସ୍ତା ମିଳିଯିବ ।'

ଶ୍ୱେତପଦ୍ମା ଫେରିଆସିଲା । ମନ ହେଉଛି ଏହି ପ୍ରାର୍ଥନା କୋଠରୀଟି ମଧ୍ୟରେ ନିରବରେ ସେ ବସି ରହନ୍ତା କି ?

'ହେ ପ୍ରଭୁ, ଟିକିଏ ଆଲୋକ ଦେଖାଅ । ଏ ଅନ୍ଧାରରେ କେଉଁଠି କିଛି ଦେଖାଯାଉ ନାହିଁ ଯେ ।' ଶ୍ୱେତପଦ୍ମା ଅନନ୍ୟୋପାୟ ହୋଇ ବସିଥିଲା ।

'ଅନ୍ଧାରରେ ବସିଛ ଏତେ ସମୟ ? ଆସ, କ୍ଲବ୍ ଆଡେ ଯାଇ ବୁଲି ଆସିବା ।'

'ନା, ଆଦୌ ଇଚ୍ଛା ନାହିଁ । ହେଇ ମୁଁ ଏ ଘରୁ ଚାଲି ଆସିଲି । ବହି ଖଣ୍ଡିଏ ଆରମ୍ଭ କରିଛି । ପଢ଼ିବି ବସି । ତୁମେ ଯାଅ ତ । ମୋତେ କିଛି କୁହନା ।'

ପ୍ରଭାତ ଅଧିକ କିଛି ନ କହି ଆଶ୍ଚର୍ଯ୍ୟରେ ଚାହିଁ ରହିଲେ ଶ୍ୱେତପଦ୍ମାକୁ । ପରେ ଧୀରେ କହିଲେ, 'ଠିକ୍ ଅଛି । ଥାଉ, ଏମିତି ଏକା ଏକା ଯିବାର ଆବଶ୍ୟକତା ନାହିଁ । କୁହତ, ମଂଜୁଳାଙ୍କ ଖବର କ'ଣ ? ଲୋପା ବି ଅନେକ ଦିନ ହେଲା ଫୋନ୍ କରିନାହିଁ । କେତେଦିନ ହେବ ଯେ ଆସି ନାହିଁ ଝିଅଟା ?'

'ଆସିବ ରୋଷନ୍‌କୁ ନେଇ ।'

'ରୋଷନ୍ ?'

'ଭୁଲିଗଲ ? ନିଜେ ମୋ ସହ ପରିଚୟ କରେଇ ଦେଇଥିଲନା ଅରୁଣର ବାହାଘରରେ ।'

'ଓହୋ, ସେଇ ସ୍ପେସ୍ ସାଇନ୍‌ଟିଷ୍ଟ୍ ? ହଁ ହଁ ଭଲ ପିଲାଟିଏ', ପ୍ରଭାତ ଧୀରେ ମନେପକାଇ କହିଲେ ।

'ଶ୍ୱେତା, କାହା ପୁଅ ସେ ? ଓଡିଆ ପିଲାଟିଏ ତ । ଆମ ଓଡିଆ ପୁଅ, ଝିଅ ବେଶ୍ ନାଁ କରୁଛନ୍ତି । ସେମାନେ ଟାଲେଣ୍ଟେଡ୍, ସିନ୍‌ସିୟର ବି । ସମସ୍ତେ ତ ସ୍କୋପ୍ ପାଉ ନାହାନ୍ତି ।'

'ଲୋପା କହୁଥିଲା, ରୋଷନ୍‌ର ବାପାଙ୍କ ନାମ ଡକ୍ଟର ବିଷ୍ଣୁ ଆଚାର୍ଯ୍ୟ ।'

'ବିଷ୍ଣୁ ଆଚାର୍ଯ୍ୟର ପୁଅ ସେ ?'

'ଚିହ୍ନିଛ ତାଙ୍କୁ ?'

'ବିଶିଷ୍ଟ ଶିକ୍ଷାବିତ୍ ପ୍ରଫେସର୍ ଡକ୍ଟର ଆଚାର୍ଯ୍ୟଙ୍କୁ କିଏ ଜାଣି ନାହିଁ ? ମୋ ଜାଣିବା ତ ଅଲଗା ବିଷୟ । ସେ ଆମ ଗାଁ ପିଲା । ତାଙ୍କୁ ତ ବହୁ କାଳରୁ ମୁଁ ଚିହ୍ନିଛି । ତେବେ ଶ୍ୱେତା, ତୁମକୁ କଥାଟିଏ ପଚାରିବି ? ଲୋପା ରୋଷନ୍‌କୁ ବିବାହ କରିବାକୁ ଚାହୁଁଛିକି ?'

'ହଠାତ୍ ଏମିତି କାହିଁକି ଭାବିଲ ?'

'ଦୁହିଁଙ୍କର ବନ୍ଧୁତ୍ୱ ଭଲ । କିଏ ଜାଣେ ଏମାନେ ପରସ୍ପରକୁ ଚାହୁଁଥିବେ ।'

'ଚାହିଁଲେ କ'ଣ ହୋଇପାରିବ ?'

'ଅସୁବିଧା କୋଉଠି ? ଝିଅଟି ତ ବାଛିବାକୁ ନାହିଁ । ଏ ପୁଅ ଠାରୁ ବି ଯୋଗ୍ୟର ନୁହେଁ କି ?'

'ରୋଷନ୍‌ର ବାପା, ମା'ଙ୍କର ଇଚ୍ଛା ଅଛି । ତେବେ ସଂଭ୍ରାନ୍ତ ଆଚାର୍ଯ୍ୟ ବଂଶର ବୋହୂ ହେବା ପାଇଁ ବଂଶ ପରିଚୟ ତ ଆବଶ୍ୟକ ।'

'କିଏ କହୁଛି ଏକଥା ? ବିଷ୍ଣୁ କହୁଛି ? ମୁଁ ତାକୁ ପଚାରିବି ।'

'ତୁମେ ? ତୁମେ ପଚାରିବ ?'

ଅକସ୍ମାତ୍ ନିଆଁରେ ପାଣି ପଡିବା ଭଳି ନିରବ ହୋଇଗଲେ ପ୍ରଭାତ । ସେ ଦୁଃଖ କରୁଛନ୍ତି କି ଶ୍ୱେତପଦ୍ମାର ବକ୍ତବ୍ୟ ଆଗ୍ରହରେ ଶୁଣୁଛନ୍ତି, ସେ କଥା ତାଙ୍କୁ ଦେଖିଲେ ବୁଝି ହେଉନଥିଲା । ମାତ୍ର ସେ ପଥର ମୂର୍ତ୍ତିଟିଏ ଭଳି ଶ୍ୱେତପଦ୍ମାକୁ ଚାହିଁ ରହିଥିଲେ ।

'ତୁମେ ଲୋପାର କେହି ନୁହଁ, ଏକଥା ଜାଣନା ? ସେମାନେ ପଚାରିବେ, କିଏ ଯେ ଝିଅଟିର ଜନ୍ମଦାତା ? କିଏ ତା'ର ମା' ? କ'ଣ ତା'ର ପରିଚୟ ? ତୁମ ପୁଅ ପାଇଁ ଏମିତି ବୋହୂ କରି ଦେଇଥାଆନ୍ତ ? କିଏ ଜାଣେ ଝିଅଟି ତା' ମା' ଭଳି ସାରା ଜୀବନ ଏକାକିନୀ ରହି ଯିବନି ତ ?'

ମୁଣ୍ଡ ଭିତରଟା ଗୋଳମାଳ ହୋଇଗଲା ପ୍ରଭାତଙ୍କର । ଏତେ ବେଶୀ ତ ସେ ଚିନ୍ତା କରିନାହାନ୍ତି ।

ସେ ଆଦୌ ଶାନ୍ତ, ସ୍ଥିର ରହିପାରୁ ନାହାଁନ୍ତି । ଖୁବ୍ ଦୂରରୁ ଯେପରି ଶୁଣାଯାଉଛି କଅଁଳ ଜନ୍ମିତ ଶିଶୁର ବିକଳ କାନ୍ଦଣା । ମୁହୂର୍ତ୍ତକ ପାଇଁ ବନ୍ଦ ହୋଇଗଲେ ବି ପୁଣି ଥରେ ବାରମ୍ବାର ସେଇ ଶବ୍ଦ ?

ସେ ପାଗଳ ହୋଇଯିବେ ନା କ'ଣ ?

'ଓହୋ କିଏ ଏମିତି କାନ୍ଦୁଛି ?'

ଇଚ୍ଛା ନ ଥିଲେ ବି ହଠାତ୍ ପଚାରିଦେଲେ ପ୍ରଭାତ ।

'ତୁମେ ଏତେ ବ୍ୟସ୍ତ କାହିଁକି ? ଇନ୍ଦୁର ନାତୁଣୀଟିଏ ହେଇଛି ।'

ସମ୍ଭବତଃ ପ୍ରଭାତ ଏ କଥା ଶୁଣିପାରୁ ନ ଥିଲେ । ଶ୍ୱେତପଦ୍ମାକୁ କିଛି ଉତ୍ତର ନଦେଇ ପାଖ ସୋଫାରୁ ଉଠି ବୈଠକ ଘରର କପ୍‌ବୋର୍ଡ ପାଖକୁ ସେ ତରତରରେ

ଉଠିଯାଇ ନ ଥାନ୍ତେ । କାଚଗ୍ଲାସ୍‌ରେ ସାମାନ୍ୟ ପାନୀୟ ଢ଼ାଳିବା ପରେ ଫ୍ରିଜ୍ ଖୋଲି ସୋଢ଼ା ବୋତଲରୁ କିଛି ସେଇ ଗ୍ଲାସ୍‌ରେ ମିଶାଇ ସେ ଫେରି ଆସିଲେ ଶ୍ୱେତପଦ୍ମା ପାଖକୁ ।

ଅଥଚ ଦୁହିଁଙ୍କ ପାଖରେ ଆଳାପ କରିବାର କଥାମାନ ଶେଷ ହୋଇଯାଇଥିଲା ।

ଶ୍ୱେତପଦ୍ମା ଭାବୁଥିଲା, ସିଧା ସିଧା କଥାରେ ସୁବିଧା ହୋଇପାରିବାର ରାସ୍ତା ସେ ଦେଖିପାରୁନାହିଁ । ତେବେ ଯାହାହେଲେ କିଛି କରିବାକୁ ହେବ । ଝିଅ, ପୁଅ ଦୁଇଟି ସୁଖରେ ରହନ୍ତୁ । କିଭଳି କ'ଣ କରାଯାଇ ପାରେ ? ପ୍ରଭାତଙ୍କୁ ସେ କ'ଣ କହିବ ?

'ବାବୁ, ଆ, ଏଠି ବସ୍ । ତୋ ସାଙ୍ଗରେ କଥା ଅଛି । ତୁ କହୁଛୁ ଯେ ଲୋପାକୁ ତୁ କଥା ଦେଇଛୁ । ସେ ତୋତେ ଖୁବ୍ ଚାହେଁ । ଏଇ କ'ଣ ଯଥେଷ୍ଟ ନୁହଁ ? ମୁଁ ମନା କରୁନାହିଁ । ମୋର କିଛି ଆପତ୍ତି ନ ରହିବା କଥା । ମୁଁ କ'ଣ ଲୋପାକୁ ଶ୍ରଦ୍ଧା କରୁନାହିଁ ? ତା' ଭଳି ଝିଅଟିକୁ ବୋହୂ କରି ପାଇଲେ କିଏ ଖୁସୀ ନ ହେବ ? ମୁଁ ତଥାପି ଭୟ କରେ ଏ ସମାଜକୁ, ଏ ମଣିଷମାନଙ୍କୁ ।'

'ମୁଁ ସୁଖରେ ରହିବାକୁ ଚାହେଁ, ବାପା । ଏ ମୋ ଜୀବନର କଥା । ସମାଜ, ବନ୍ଧୁ, ପରିବାର ମୋର ଶତ୍ରୁ ହୋଇପାରନ୍ତି, ମୋ ସୁଖ ମୁଁ ବଳିଦେବି କାହିଁକି ?' ରୋଷନ୍ ନିଜ ଯୁକ୍ତିରେ ଅଟଳ ।

'ତୁ କହ ଧନ, ଜୟଶ୍ରୀକୁ ପିଲାଟି ଦିନରୁ ବୋହୂ କରିବାକୁ ମୁଁ ମନସ୍ଥ କରିଛି । ତୁ ତ ତା' ସାଙ୍ଗରେ ଖେଳୁ । ଖୁସୀ ହେଉ ସେ ଆସିଲେ । ସେମାନେ ପ୍ରସ୍ତାବ ଦେଇଛନ୍ତି । ତାକୁ ତୁ ସାନବେଳୁ ଜାଣିଛୁ । ତୁ ଯଦି ରାଜି ହେଉ ଏସବୁ ସମସ୍ୟା କିଛି ଆସିବ ନାହିଁ ।'

'କି ସମସ୍ୟା ମା' ? ଲୋପା ବିଷୟ ମୁଁ ଚିଠିରେ ଲେଖିଥିଲି । ତୁମେ ସମସ୍ତେ ତା'ର ଫଟ ଦେଖି ଖୁସୀ ହେଉଥିଲ । ଏବେ କାହିଁକି ମତ ବଦଳେଇ ଦେଉଛ ?'

ତୁଳସୀ ଏତେ ବଡ ପୁଅକୁ କ'ଣ କହିବେ ଜାଣି ପାରିଲେ ନାହିଁ । ସ୍ୱାମୀଙ୍କୁ ବ୍ୟସ୍ତ ଦୃଷ୍ଟିରେ ଚାହିଁ ରହିଲେ ସେ । ବିଷ୍ଣୁ ଆଚାର୍ଯ୍ୟ ପତ୍ନୀଙ୍କୁ ସାହସ ଦେବାଭଳି କଥା ଆରମ୍ଭ କଲେ ।

'ଗାଁରେ ଆମ ଖାନଦାନି କଥା ଚର୍ଚ୍ଚାର ବିଷୟ । ସମସ୍ତେ ଏ ଘରେ ବନ୍ଧୁ ବାନ୍ଧିବାକୁ ଇଚ୍ଛା କରନ୍ତି । ତୋର ଦୁଇଟି ଭଉଣୀ, ଗୋଟିଏ ଭାଇ ବିବାହ କରିବେ, ତୁ ଯଦି ଏଇଭଳି ଜିଦ୍ କରୁ ସେମାନଙ୍କ ବିଷୟ କ'ଣ ହେବ ? ଏଇ ସମାଜ ସହ ସଂପୃକ୍ତ ରହି ନିଜକୁ ସ୍ୱତନ୍ତ୍ର କରି ଚଳାଇ ପାରିବି ? ଯେଉଁମାନଙ୍କୁ ସଂସାରକୁ ଆଣିଛି, ସେମାନଙ୍କ ବିଷୟ ତ ଚିନ୍ତା କରିବି ।'

ରୋଷନ୍ କିଛି ଭାବିପାରୁ ନ ଥିଲା । ତା' ସାମନାରେ ସେଇ ଜଣେ । ରୂପ ଜ୍ଞାନର ଐଶ୍ୱର୍ଯ୍ୟରେ ମଣ୍ଡିତ, ହସ ହସ ସୁନ୍ଦର କୋମଳ ମୁହଁଟିଏ । ସେ ଲୋପା । ତା'ର ଅତି ଆପଣାର ଲୋପା । ଏସବୁ କଥା ତାକୁ ଶୁଣାଇ ହେବ ନାହିଁ । କିମ୍ୱା ନିଜ ଜୀବନରୁ ତାକୁ ଭିନ୍ନ କରିହେବ ନାହିଁ । ଏମିତି ପରିସ୍ଥିତିରେ ସେ କ'ଣ କରିବ ??

ବାହାରେ କିଏ ଡାକୁଥିଲେ । ବିଷ୍ଣୁ ଆଚାର୍ଯ୍ୟ ଅତ୍ୟନ୍ତ ଭଦ୍ରାମିରେ କହିଲେ,

'ଭିତରକୁ ଆସନ୍ତୁ । କବାଟ ଖୋଲାଅଛି ।'

ରୋଷନ୍ ନିଜ କୋଠରୀ ଆଡେ ଚାଲିଗଲା । ତୁଳସୀ ଗଲେ ରାତି ରନ୍ଧା ଆରମ୍ଭ କରିବା ପାଇଁ ।

'ହଇହୋ, ଦେଖୁଛ କିଏ ଆସିଛି ? ତୁ କେଡେ ବୁଢ଼ା ହୋଇଗଲୁ ରେ ? ଚିହ୍ନି ହେଉନାହିଁ ।' ବିଷ୍ଣୁ ଆଚାର୍ଯ୍ୟ ହସି ହସି କହୁଥିଲେ । ତୁଳସୀ ରୋଷେଇ ଘରୁ ବାହାରି ଆସି ଆଗନ୍ତୁକଙ୍କ ଉଦ୍ଦେଶ୍ୟରେ ହାତ ଯୋଡିଲେ ନ ଚିହ୍ନିଲେ ମଧ ।

'ତୁମେ ନରେନ୍ଦ୍ରକୁ ଚିହ୍ନୁଛଟି ? ଡାକ୍ତର ନରେନ୍ଦ୍ର ସାମନ୍ତ । ମହାରାଷ୍ଟ୍ରରେ ରହିଛି । ତା'ର ସେଠି ବିରାଟ ନର୍ସିଂହୋମ୍ । ସେ କ'ଣ ମୋଭଳି ମାଷ୍ଟର ହୋଇଚିକି ଏଠି ପଡିରହିଥିବ କେତେଟା ଟଙ୍କା ପାଇଁ । ଦିଅ, ଦିଅ ଆଗ ଆମକୁ କପେ କପେ ଚା' ଦେଇ । ପିଲାମାନେ କୁଆଡେ ଗଲେ ? ଡାକ ସେମାନଙ୍କୁ । ରୋଷନ୍ ?'

'ଆସୁଛି ବାପା ।'

'ତୁମେ ରୋଷନ୍ ଆଚାର୍ଯ୍ୟ ? ଖବରକାଗଜରେ ଫଟୋ ଦେଖିଥିଲି । ତୁମ ଗବେଷଣା ଲେଖାଟି ପଢ଼ିଥିଲି ମଧ୍ୟ ।

ଏ ପୁଅର ଭବିଷ୍ୟତ ଉଜ୍ଜ୍ୱଳମୟ ।'

'ଡାକ୍ତରୀ ଛାଡି ଏବେ ଜ୍ୟୋତିଷ ଶାସ୍ତ୍ରରେ ମନ ଦେଲୁଣି କିରେ ?'

'ଛାଡ - ମୋ କଥା ? ତୋ କଥା କହ । କେବେ ରିଟାୟାର୍ କରୁଛୁ ?'

'ଅଛି, ଅଛି । ବ୍ୟସ୍ତ ହୋନା । ବୁଢ଼ା ହୋଇନାହିଁ, ଆହୁରି ପାଞ୍ଚ ଛଅବର୍ଷ ଚାକିରି ଅଛି । ତା' ଭିତରେ ପିଲାଙ୍କ ଶିକ୍ଷା, ଦୀକ୍ଷା, ବିବାହକାର୍ଯ୍ୟ ଇତ୍ୟାଦି ଶେଷ ହୋଇଯିବ ଭାବୁଛି ।'

'ଭଲ, ଭଲ । ଏଭଳି ପ୍ଲାନିଂ ତୋର ଖୁବ୍ ଭଲ ।'

'କ'ଣ ଏମିତି ଫରମାଲ୍ କଥାବାର୍ତ୍ତା କରୁଛୁ ? ଚାଲ୍, ମୋ ଷ୍ଟଡିରୁମ୍‌ରେ ବସିବା । ବହୁତ ଦିନ ପରେ ଦେଖା । କୋଉଠି ରହିଲୁ ଏତେ ଦିନ ? ମୋ କଥା ତ ଜାଣୁ । ଏସବୁ ଇଉନିଭର୍ସିଟିରେ ଛାତ୍ର, ଶିକ୍ଷକମାନଙ୍କ ଶୃଙ୍ଖଳିତ ଜୀବନଧାରା ବିଷୟ ତ ଖବରକାଗଜରୁ ଦେଖୁଥିବୁ ।' ବିଷ୍ଣୁ ଆଚାର୍ଯ୍ୟ ମନ ଖୋଲି ହସୁଥିଲେ । ନରେନ୍ଦ୍ରଙ୍କ ହାତରେ ଚା' କପ୍ ହଲି ପ୍ଲେଟ୍‌ରେ ଅଳ୍ପ କିଛି ଚା' ଢ଼ାଳିଗଲା । ସେ ଗମ୍ଭୀର ହୋଇଗଲେ । ବନ୍ଧୁ ବିଷ୍ଣୁ ମୁହଁରୁ ଖବର କାଗଜର ଛାତ୍ର, ଶିକ୍ଷକ ବିଶୃଙ୍ଖଳା ବିଷୟଟି ତାଙ୍କୁ ବିଷଣ୍ଣ କରିଦେଲା । ମାତ୍ର ବିଷ୍ଣୁ ଏସବୁ ଉପରେ ଗୁରୁତ୍ୱ ଦେଉ ନାହିଁ । ସେ ବେଶ୍ ପ୍ରଗଳ୍ଭ ହୋଇ କେତେକଥା କହିବାରେ ଲାଗିଛି । ଶେଷରେ ନିଜ ଚା' କପ୍ ଉଠେଇ ତା' ଷ୍ଟଡିରୁମ୍ ଯାଇସାରିଲାଣି ।

ଏବେ ନରେନ୍ଦ୍ର ବାଧ୍ୟ ଛାତ୍ରଟି ଭଳି ତାଙ୍କ କପ୍ ପ୍ଲେଟ୍ ଉଠେଇ ସେଇ କୋଠରୀକୁ ଚାଲିଲେ ତାଙ୍କ ପଛରେ ।

ନିରବରେ ଚା' ପିଉଥିବାବେଳେ ନରେନ୍ଦ୍ର ପଚାରିଲେ,

'ରୋଷନ୍‌ର ବାହାଘର ଠିକ୍ କଲୁଣି ?'

'ଚାଲିଛି ।' ବିଷ୍ଣୁ ଆଚାର୍ଯ୍ୟ ଉତ୍ତର ଦେଲେ ଗମ୍ଭୀର ଭାବରେ ।

'ହଁ, ଯୋଗ୍ୟର ଝିଅଟିଏ ଦେଖିବାକୁ ହେବ ।' ନରେନ୍ଦ୍ର କହିଲେ ।

'ଆମେ କିଏ ସେମାନଙ୍କ ପାଇଁ ଭାବିବାକୁ ?'

'କ'ଣ ଏମିତି କଥା କହୁଛୁ, ବିଷ୍ଣୁ ?'

'ଦେଖ ଭାଇ, କିଛି ତୋ କଥା କହ । କାହିଁ ଭଲା ଏସବୁ ସମସ୍ୟାମାନ ଶୁଣି ମନ ଭାରାକ୍ରାନ୍ତ କରିବୁ ?'

'ତୋ ସୁଖ, ଦୁଃଖ ମୋତେ କହିବୁ ନାହିଁ ତ ଆଉ କାହାକୁ କହିବୁ ?'

'ନା, ଦୁଃଖ ଆଉ କ'ଣ ? ସବୁକଥା ଅତି ସୁଖକର । ରୋଷନ୍ ନିଜେ ଜଣେ ଝିଅକୁ ଠିକ୍ କରିଛି । ସେ ତ ଲକ୍ଷ୍ମୀଟିଏ । ସରସ୍ୱତୀ ମଧ୍ୟ । କିନ୍ତୁ କ'ଣ କରିବି ? ପୁଅକୁ ବାଧ କରି ଅନ୍ୟତ୍ର ବିବାହ କରାଇବି ।'

'ତୁ ଏ କ'ଣ କରୁଛୁ, ବିଷ୍ଣୁ ? ପୁଅର ମନ ଭାଙ୍ଗି ଦେବୁ । ଏଥିରେ କ'ଣ ଅସୁବିଧା ଅଛି ?'

'ଦେଖାଯାଉ । ଝିଅର ମାତୃପରିଚୟ ଜଣାଅଛି । ଅଥଚ ପିତୃ ପରିଚୟ ସଂପୂର୍ଣ୍ଣ ଅଜଣା । କହ ତୁ, ଆମେ କ'ଣ କରିପାରିବୁ ?

କିଛି କହୁନୁ ଯେ ଚୁପ୍ ରହିଗଲୁ କାହିଁକି ?'

'କରିଦେ । ପୁଅକୁ ତା'ର ସାରା ଜୀବନ ଦୁଃଖୀ କର ନାହିଁ ।'

'ଏ କ'ଣ ? ମୋର ଆଉ ତିନୋଟି ଅଛନ୍ତି ଯେ ? ସେମାନଙ୍କର କେମିତି କ'ଣ ହେବ ? ଏ ମଣିଷମାନେ କ'ଣ ଏଭଳି ବ୍ରଡ୍ ମାଇଣ୍ଡେଡ୍ ହେଲେଣି ? ଦୁଃଖଟା ସେଇଠି । ନୋଚେତ୍ ଏ ଝିଅଟିକୁ ତ ବାଛିବାର ନାହିଁ ।'

'ଝିଅଟି କିଏ କହତ ?'

'କ'ଣ କହିବି ? ତୁ ଚିହ୍ନିବୁ ନାହିଁ । ତୁ ତ ତୋ ରୋଗୀ, ଡାକ୍ତରଖାନା ନେଇ ବ୍ୟସ୍ତ । ଏସବୁରେ ତୋ ମୁଣ୍ଡ ଖେଳିବ ନାହିଁ ।'

'ଓହୋ, ତା'ର ମା'ଙ୍କ ନାଁ କହ ।'

'ମା'ଙ୍କର ନାମ ତୋତେ ଜଣା ନିଶ୍ଚୟ । ମା', ଝିଅ ଉଭୟ ବେଶ୍ ସୁପରିଚିତ । ଏ ରାଜ୍ୟରେ ଯେ ସମସ୍ତେ ଜାଣନ୍ତି ସେ ଦୁହିଁଙ୍କୁ ତା' ନୁହେଁ । ସାରା ଦେଶ ଜାଣେ ।'

'ତୁ ଏମିତି ପ୍ରହେଳିକା ସୃଷ୍ଟି କରୁଛୁ କାହିଁକି ?'

'ନରେନ୍ଦ୍ର, ତୁ ଯୁବ ବୈଜ୍ଞାନିକା ଲୋପାମୁଦ୍ରା ଶର୍ମାଙ୍କ ନାଁ ଏବେ ଶୁଣିଥିବୁ କି କ'ଣ ?'

'ଆରେ, ଟି.ଭି, ରେଡିଓ, ଖବରକାଗଜ ସବୁଥିରେ ମିସ୍ ଶର୍ମାଙ୍କୁ ଦେଖୁଛି ।

ଏ କ'ଣ କହୁଛୁ ? ଉଚ୍ଚତର ଗବେଷଣା ପାଇଁ ସେ ତ ଏକମାତ୍ର ଖୁବ୍ ଶୀଘ୍ର 'ନାସା' ଯିବା ପାଇଁ ସିଲେକ୍ଟ ହୋଇଛନ୍ତି ।'

'ସେଇ ଝିଅ । ମଂଜୁଳା ଶର୍ମାଙ୍କ ଝିଅ । ଅଧିକ କ'ଣ ପରିଚୟ ଦେବି କହ ?'

'ମଂଜୁଳା ଶର୍ମା !' ଡାକ୍ତର ହଠାତ୍ ଚମକି ପଡିଲେ ଯେମିତି ।

'କ'ଣ ହେଲା ନରେନ୍ଦ୍ର ?'

'ସେ କ'ଣ ମଂଜୁଳା ଶର୍ମାଙ୍କ ଝିଅ ? ତୁ ଭଲକରି ଜାଣୁ ?'

'କାହିଁକି ? ତୋର ପରିଚୟ ଅଛି କି ?'

'ନା - ବନ୍ଧୁ, ମୁଁ ଜାଣେ ମଂଜୁଳା ବିବାହ କରିନାହିଁ ।'

'ସେଇ ବିଷୟ ତ କାଳ ହୋଇଛି ମୋ ପରିବାର ପାଇଁ ।'

'ଏଁ... ହଁ... ହଁ ।'

ନରେନ୍ଦ୍ର ସାମନ୍ତ ଅସୁସ୍ଥ ହୋଇପଡୁଥିଲେ । କ'ଣ କହିବେ କହିବେ ହୋଇ ବ୍ୟସ୍ତ ହୋଇପଡିଲେ ସେ ।

'କ'ଣ ଡାକ୍ତର ? କୋଉ ରୋଗୀ କଥା ମନେ ପଡିଲା ? ତୁମେ ଡାକ୍ତର ସବୁ ଏମିତିରେ । ମୁହୂର୍ତ୍ତେ ସ୍ଥିର ହୋଇ ବସି ପାରିବ ନାହିଁ । କାଲି ମିଟିଂ ଅଛି । ଆଜିଠୁଁ କାହିଁକି ବ୍ୟସ୍ତ ? ଏବେ ଡିନାର୍ ଖାଇବୁ କହୁଥିଲୁ ନା ?'

'ଥାଉ, ଥାଉ ଦିନେ । ଭାଉଜଙ୍କୁ ବୁଝେଇ ଦବୁ । ଅତି ଅରଜେଣ୍ଟ୍ କାମ ଅଛି । ମୁଁ ଆସେ । କଥା ଦେଲି ନିଶ୍ଚୟ ଆସିବି । ଭୁଲ ବୁଝିବୁ ନାହିଁ ।'

ବିଷ୍ଣୁ ଆଚାର୍ଯ୍ୟ ନରେନ୍ଦ୍ରଙ୍କୁ ବାହାର ଫାଟକ ପର୍ଯ୍ୟନ୍ତ ବଳେଇ ଦେବାକୁ ବାହାରିଗଲେ ।

ଅପେକ୍ଷା କରିଥିବା ଟ୍ୟାକ୍ସିରେ ନିଜକୁ ସଂଭାଳି ଉଠି ପଡିଲେ ଡାକ୍ତର ନରେନ୍ଦ୍ର ସାମନ୍ତ । ମାତ୍ର ପାଞ୍ଚ, ଛଅ କିଲୋମିଟର ଦୂରରେ ଥିବା ହୋଟେଲଟିର ଦୂରତ୍ୱ ଏବେ ଶହ ଶହ ମାଇଲ ପରି ମନେ ହେଉଛି । ତଥାପି ହୋଟେଲଟିରେ ପହଞ୍ଚି, ଟ୍ୟାକ୍ସିର ପ୍ରାପ୍ୟ ଯଥା ଶୀଘ୍ର ଦେଇ କିପରି ସେ ନିଜ ରୁମ୍‌କୁ ଆସିଲେ, ରୁମ୍ ସରର୍ଭିସ୍ କରିବା ପାଇଁ ଅଳ୍ପ କିଛି ଖାଦ୍ୟ ଅର୍ଡର କଲେ ରୁମ୍‌ବୟ୍‌କୁ ଏବଂ ସବୁ ଦୁଶ୍ଚିନ୍ତାରୁ ନିଜକୁ ଦୂରେଇ ରଖି କିପରି ସେ କ୍ଳାନ୍ତ ଦେହକୁ ବିଛଣାରେ ଲୋଟାଇ ଦେଲେ, ତାହା ସେ କିଛି ବୁଝି ପାରୁନଥିଲେ ।

ଡାକ୍ତର ନରେନ୍ଦ୍ର ସାମନ୍ତ ଭୁଲି ଯାଇଥିଲେ ପରବର୍ତ୍ତୀ ଦିନ ସକାଳ ନଅଟାରେ ହୋଟେଲ୍ ଗ୍ରୀନ୍‌ଉଇଚ୍‌ର କନ୍‌ଫରେନ୍ସ ହଲ୍‌ରେ ତାଙ୍କୁ ଉପସ୍ଥିତ ହେବାକୁ ହେବ । କେବଳ ସେଇଥିପାଇଁ ହିଁ ସେ ଏ ସହରରେ ପହଞ୍ଚିଛନ୍ତି ।

ଟେବୁଲ୍‌ରେ ଖାଦ୍ୟ ସେମିତି ପଡି ରହିଲା । ତଣ୍ଟିରେ ଗଳିବା ମଧ କଷ୍ଟକର ହେଲା ସେସବୁ । ଚେୟାର୍‌ରେ ଢ଼ଳି ପଡିଲେ ସେ ଅର୍ଦ୍ଧଚେତନ ଭାବରେ ।

'ସାର୍... ଆପଣ ଅସୁସ୍ଥ ? କାହାକୁ ଖବର ଦେବି ?' ନିଜେ ମ୍ୟାନେଜର ଆସି ପଚାରୁଥିଲେ ନରେନ୍ଦ୍ରଙ୍କୁ ।

'ଓଃ ନୋ । ଆଇ ଆମ୍ କ୍ୱାଇଟ୍ ଟାୟାର୍ଡ ।' ଡାକ୍ତର କ୍ଳାନ୍ତ ସ୍ୱରରେ ଉତ୍ତର ଦେଲେ ।

ଡାକ୍ତର ନରେନ୍ଦ୍ର ସାମନ୍ତ ବହୁତ କଷ୍ଟରେ ଇଣ୍ଡଷ୍ଟ୍ରିଆଲିଷ୍ଟ୍ ପ୍ରଭାତ ମିଶ୍ରଙ୍କ ଅଫିସ୍ ଏବଂ ଘରର ଫୋନ୍ ନମ୍ବର ସଂଗ୍ରହ କଲେ ସେ ରହୁଥିବା ସେଇ ହୋଟେଲର ମ୍ୟାନେଜର୍‌ଙ୍କ ଠାରୁ ।

ଏତେ ରାତିରେ ପ୍ରଭାତ ଅଫିସ୍‌ରେ ନ ଥାଇ ପାରନ୍ତି ଭାବି ସେ ଘରକୁ ଫୋନ୍ କଲେ ।

'ନା - ସେ ନାହାଁନ୍ତି, ବାହାରକୁ ଯାଇଛନ୍ତି ।' କେହି ଜଣେ ଉତ୍ତର ଦେଲା ।

'ମା'ଙ୍କୁ ଟିକେ ଫୋନ୍ ଦେବ ? ଅଫିସ୍ ସଂକ୍ରାନ୍ତରେ ଅତି ଅର୍‌ଜେଣ୍ଟ ଖବର ଅଛି ।'

ବହୁତ କଷ୍ଟରେ ଅନେକଥର ଚେଷ୍ଟା କରିବା ପରେ ଶ୍ୱେତପଦ୍ମା ଫୋନ୍ ଧରିଲା, 'ଦେଖନ୍ତୁ, ମିଷ୍ଟର ମିଶ୍ର ଦୁଇଦିନ ପାଇଁ ବାହାରକୁ ଯାଇଛନ୍ତି । ତାଙ୍କୁ ଡିଷ୍ଟର୍ବ କରିବାକୁ ସେ ମନା କରିଛନ୍ତି ।'

'ମୁଁ ନରେନ୍ଦ୍ର ତାଙ୍କର ଏକାନ୍ତ ଅନ୍ତରଙ୍ଗ । ଅଫିସ୍‌ର କିଛି ଦରକାରୀ କାଗଜ ନିଜେ ତାଙ୍କ ହାତରେ ଦେବାକୁ ଚାହେଁ । ମୁଁ କାଲି ସକାଳେ ଚାଲିଯାଉଛି ଏ ସହର ଛାଡି । ଅନ୍ତତଃ ତାଙ୍କ ସହ ଟିକେ କଥାବାର୍ତ୍ତା କରିପାରନ୍ତି ଯଦି ?'

ଅଗତ୍ୟା ଶ୍ୱେତପଦ୍ମା ପ୍ରଭାତଙ୍କର ମୋବାଇଲ୍ ଫୋନ୍ ନମ୍ବର ନରେନ୍ଦ୍ରଙ୍କୁ ଜଣାଇଲା । ମନେ ମନେ ଖୁବ୍ ବ୍ୟସ୍ତ ହେଲା ସେ । ପ୍ରଭାତ ତାକୁ ସାଙ୍ଗରେ ଯିବାପାଇଁ ଡାକୁଥିଲେ । ସେ ମନାକଲା । ମାତ୍ର ତାକୁ ଏମିତି ସବୁ ଅଜବ ଲୋକଙ୍କ ସହ ଯେ କଥାବାର୍ତ୍ତା କରିବାକୁ ପଡିବ ତା' ତ ସେ କହି ନ ଥିଲେ ।

ବହୁ କଷ୍ଟରେ ପ୍ରଭାତ ଫୋନ୍ ଧରିଲେ ।

'.. ହଁ ହଁ ମୁଁ କହୁଛି, ପ୍ରଭାତ ମିଶ୍ର କହୁଛି ।'

'ମୁଁ ଡାକ୍ତର ନରେନ୍ଦ୍ର ସାମନ୍ତ, ଚିହ୍ନିଲେ କି ?'

'ଏବେ କ'ଣ କହୁଛନ୍ତି ?'

'ମୋର ଟିକେ ଆପଣଙ୍କ ସହ ଜରୁରୀ କଥା ଥିଲା । ବ୍ୟସ୍ତ ହେବେ ନାହିଁ, ମୋତେ ନାହିଁ କରିବେ ନାହିଁ ଯିବାକୁ । ମୁଁ ଯାହାହେଲେ ଆପଣଙ୍କ ପାଖରେ ପହଞ୍ଚିବି ।'

'ଆପଣ କେତେବେଳେ ଆସିବେ ?'

'ମୁଁ ଏଇ ରାତିରେ ଆପଣଙ୍କ ପାଖରେ ପହଞ୍ଚିବାକୁ ଚାହେଁ ।'

'ତା' ତ ହୋଇ ପାରିବ ନାହିଁ । ଅଧ ରାତିରେ ଟ୍ୟାକ୍ସି ନେଇ ଏତେଦୂର ଆସିବା ଆଦୌ ସେଫ୍ ନୁହଁ । ଆପଣ ବରଂ ଟ୍ରେନ୍‌ରେ ଆସନ୍ତୁ । ଖୁବ୍ ସକାଳେ ମୋ ଗାଡି ଡ୍ରାଇଭର ଷ୍ଟେସନ୍‌ରୁ ଆପଣଙ୍କୁ ନେଇ ଆସିବ । ଟ୍ରେନ୍ ସକାଳେ ପହଞ୍ଚିଯାଏ ।'

ପ୍ରଭାତ ଆବଶ୍ୟକୀୟ ବିଷୟ କିଛି ବୁଝାଇ କହିଲେ ଡାକ୍ତରଙ୍କୁ ।

ରେଲ୍‌ୱେ ଷ୍ଟେସନ୍ ଏମିତି ଲୋକାରଣ୍ୟ ହୋଇଛି କାହିଁକି ? ପ୍ଲାଟ୍‌ଫର୍ମରେ ଜାଗା ନାହିଁ । ସବୁ ବେଞ୍ଚ, ଚେୟାର୍ ଅଧିକାର କରି ବସିଥିଲେ ଯାତ୍ରୀମାନେ । ଟ୍ରେନ୍ ଟାଇମ୍ ଆହୁରି ଅଧଘଣ୍ଟାଏ । ରିଜର୍ଭେସନ୍ ମିଳିବାର ସମ୍ଭାବନା ନାହିଁ । ତଥାପି ତ ଏଇ ରାତିରେ ତାଙ୍କୁ ଯିବାକୁ ହେବ ।

ଡାକ୍ତରଙ୍କ ମୁଣ୍ଡ ଘୂରୁଥିଲା । ସେ ଖୁବ୍ ବିଚଳିତ ହୋଇ ପଡିଥିଲେ । ଅଳ୍ପ ସମୟ ପୂର୍ବରୁ ହାତ ବ୍ୟାଗ୍‌ରେ ଥିବା ଗୋଟିଏ ଟାବ୍‌ଲେଟ୍ ପାଟିରେ ପକାଇ

ପାଣିବୋତଲରୁ କିଛି ପାଣି ପିଇଥିଲେ ସେ । ତଥାପି ଦେହ ଥରି ଉଠୁଛି । ମୁଣ୍ଡଟା ମଧ ଭାରୀ ଲାଗୁଛି । ପଡିଯିବା ଭଳି ଲାଗୁଛି । ମାତ୍ର ତାଙ୍କୁ ଯେ ପ୍ରଭାତଙ୍କ ପାଖକୁ ଯିବାକୁ ହେବ । ଯେଉଁ ଇଚ୍ଛା ଶକ୍ତି ତାଙ୍କୁ ଟ୍ରେନ୍ ପର୍ଯ୍ୟନ୍ତ ନେଇ ଆସିଥିଲା, ଶାରୀରିକ ଦୁର୍ବଳତା ତାଙ୍କୁ ହାର ମନେଇ ଦେଉଛି । ସେ ଏବେ କ'ଣ କରିବେ ?

କିଏ ଜଣେ ତାଙ୍କୁ ଦେଖିପକାଇଲା । ସେ ବ୍ୟସ୍ତ ହୋଇ ତାଙ୍କୁ ଧରି ନେଲା ନୋଚେତ୍ ନରେନ୍ଦ୍ର ସେଇ ପ୍ଲାଟ୍‌ଫର୍ମରେ ତଳଟାରେ ପଡିଯାଇଥାଆନ୍ତେ ।

'ଆପଣ ଖୁବ୍ ଅସୁସ୍ଥ କି ? ବସନ୍ତୁ, ମୁଁ ଉଠିଯାଉଛି । ବ୍ୟସ୍ତ ହୁଅନ୍ତୁ ନାହିଁ । ମୋର ଅସୁବିଧା ହବ ନାହିଁ । ନିଅନ୍ତୁ, ଏ ଆପଲ୍ ଜୁସ୍‌ଟା ପିଇଦିଅନ୍ତୁ । ଆପଣଙ୍କ ଦେହରେ ଏତେ ଝାଳ !'

'ଖୁବ୍ ଗରମ ପଡିଚି । ନୁହେଁ କି ? ମୁଁ ଠିକ୍ ଅଛି । ଟ୍ରେନ୍ ଆସିଲେ ବିଶ୍ରାମ ନେବି । ଗୋଟାଏ ରାତି କଥା ତ ।' ଅତି କଷ୍ଟରେ ଏତିକି ମାତ୍ର କହିଲେ ଡାକ୍ତର ନରେନ୍ଦ୍ର ।

ମଣିଷ ମଧରେ ଏମିତି ବି ଦେବତା ଅଛନ୍ତି । ଲୋକଟି ତାଙ୍କୁ ଟ୍ରେନ୍‌ରେ ଉଠାଇବାରେ ସାହାଯ୍ୟ କଲା । ଅନ୍ୟ ଯାତ୍ରୀମାନଙ୍କୁ ଅନୁରୋଧ କଲା,

'ଭାଇ, ସାର୍ ଖୁବ୍ ଅସୁସ୍ଥ । ଟିକିଏ ଜାଗା କରିଦିଅ । ସେ ଶୋଇ ପାରିଲେ ଭଲ ହୁଅନ୍ତା ।'

ସେମାନେ ଉଠିଗଲେ । ଅନ୍ୟ ପାଖରେ କଷ୍ଟ କରି ବସିଲେ । ନରେନ୍ଦ୍ର ପାଇଁ ତିନି ଜଣିଆ ସିଟ୍‌ଟି ଶୋଇବା ପାଇଁ ଛାଡିଦେଲେ । ଜଣେ କେହି ଘରୁ ଆଣିଥିବା ଖାଦ୍ୟରୁ ବ୍ରେଡ୍ ଦୁଇଖଣ୍ଡି ତାଙ୍କୁ ଖାଇବାକୁ ଦେଲା । ଫ୍ଲାସ୍କରୁ ପାଣି, କଫି କପେ ।

ସେକେଣ୍ଡ୍ କ୍ଲାସ୍ କମ୍ପାର୍ଟମେଣ୍ଟର ଏଇ ପାଖରେ ଏମିତି ଏତେ ଭିଡ ନ ଥିଲା ।

ଡାକ୍ତର ଟିକିଏ ଆଖି ବୁଜିଲେ । ଶୋଇବା ପୂର୍ବରୁ କହିଲେ, 'ଭାଇ, ଆପଣଙ୍କ ସହୃଦୟତା ମୁଁ ଭୁଲି ପାରିବି ନାହିଁ । ମୁଁ ବିଶ୍ରାମ ନେଉଛି, କିଛି ମନେ କରିବେ ନାହିଁ ।'

ଆଖିବୁଜି ଶୋଇବାର ଉପକ୍ରମ କଲେ ସେ । ଭାବିଥିଲେ, ଏ ରାତିଟା ସେ ନିଶ୍ଚିନ୍ତ ନିଦରେ ଶୋଇଗଲେ ବିଶ୍ରାମ ହେବ । ସକାଳୁ ବେଶ୍ ସତେଜ ଲାଗିବ । ଦେହ ମନର କ୍ଲାନ୍ତି ଦୂର ହେବ । ବାହାରେ ସମ୍ଭବ ହେଲେ ୱେଟିଂ ରୁମ୍‌ରେ ଗାଧୋଇ ନେଇ ସେ ବାହାରି ଯିବେ । ମିଷ୍ଟର ମିଶ୍ରଙ୍କୁ ଦେଖା କରିବେ ।

ମାତ୍ର ନିଦ କାହିଁ ? ଆଖିରୁ କିଏ ପୋଛି ଦେଇଛି ନିଦ୍ରା । ଯଦିବା କେତେବେଳେ ଛାଇ ଛାଇକା ନିଦ ଟିକେ ଆସିଯାଉଛି, ତାଙ୍କର ମନେହେଉଛି ସଦ୍ୟ ଜନ୍ମିତ ଅସଂଖ୍ୟ ଶିଶୁ ତାଙ୍କୁ ଘେରି ଶୋଇ ରହିଛନ୍ତି । ଆଃ କି ହୃଦୟବିଦାରକ ସେ କାନ୍ଦ ? ବିକଳ ହୋଇ କାନ୍ଦୁଛନ୍ତି ସେମାନେ । କୋଉଠୁ ମାଡି ଆସୁଛି ମହାକାଳ ଅନ୍ଧାର । ଅଦ୍ଭୁତ ବିକଟାଳ ଶବ୍ଦ, ସେ ଆଦୌ କଥା କହିପାରୁନାହାଁନ୍ତି । ଯେତେ ଚେଷ୍ଟା କଲେ ବି ଗୋଡ, ହାତ କାଠଗଡ ପରି ପଡିରହୁଛି ନିଥର ହୋଇ । ଅତି କଷ୍ଟରେ ପାଟିରୁ ଗଁ ଗଁ ଶବ୍ଦ ବ୍ୟତୀତ ସେ କିଛି ବି କହି ପାରୁନଥିଲେ । ବହୁ କଷ୍ଟରେ ଆଖି ଖୋଲିଲେ ସେ । ମୁଣ୍ଡ ତଳେ ଦୁଇ ହାତ ଛନ୍ଦି ବଗିର ଉପରି ଭାଗରେ ଥିବା ପଙ୍ଖାକୁ ସେ ଚାହିଁ ରହିଲେ ଅସହାୟ ଭାବରେ । ଝରକା ଖୋଲା ଥିଲା । ଥଣ୍ଡା ପବନ ତାଙ୍କ ଦେହକୁ ଛୁଇଁ ଦେଇ ଯାଉଥିଲା । ତଥାପି ଆଖି ବୁଜି ଶୋଇ ପଡିବାର ଉପକ୍ରମ ସେ କଲେନାହିଁ । ଆଉ କେତେ ମନସ୍ତାପ, ଦୁଃଖ ଭୋଗିବାକୁ ଅଛି ଜୀବନରେ ?

ଏଇତ ମାତ୍ର ତେଇଶ, ଚବିଶ ବର୍ଷ ପୂର୍ବର କଥା ।

ସେଦିନ ସବୁ ଥିଲା ସ୍ୱପ୍ନମୟ । ଅର୍ଥର ପ୍ରାଚୁର୍ଯ୍ୟର ପରିକଳ୍ପନାରେ ବିଭୋର ହୋଇ ଉଠିଥିଲେ ଡାକ୍ତର ନରେନ୍ଦ୍ର ସାମନ୍ତ ।

ଏମ୍.ବି.ବି.ଏସ୍ ଡିଗ୍ରୀ ହାସଲ କଲେ ଚାକିରି ଖଣ୍ଡେ ଯେ ମିଳିଯିବ, ସେପରି ସଂଭାବନା ଆଦୌ ନଥିଲା ।

ଅନ୍ୟ ବନ୍ଧୁମାନେ କୁଆଡେ ଗଲେ ? ଘରେ ବସି ପ୍ରାକ୍ଟିସ୍ କଲେ କିମ୍ବା କାହାର କ୍ଲିନିକ୍‌ରେ କାର୍ଯ୍ୟକଲେ, ସେ ଖବର ନରେନ୍ଦ୍ର ରଖି ନ ଥିଲେ ।

ଗାଁରେ ସମାନ୍ୟ କିଛି ଧାନ ଜମି । ରହିବା ପାଇଁ ଚାରି, ପାଞ୍ଚ ବଖରା ଚାଳଘର । ବାଡି, ଦାଣ୍ଡ ପାଖ ଜମି କିଛି ବାପାଙ୍କ ଭାଗରେ ପଡିଥିଲା । ଗାଁ ହାଇସ୍କୁଲ୍‌ରେ ଶିକ୍ଷକତା କରି ବାପା ଯାହା ପଇସା ଆଣୁଥିଲେ, ଦୁଇ ପୁଅଙ୍କ ପାଠ ପଢ଼ା, ଝିଅଟିର ବାହାଘର ପାଇଁ ସଂଚୟ କରି ରଖୁଥିଲେ ।

ବହୁ କଷ୍ଟରେ ଲୋନ୍ ଷ୍ଟାଇପେଣ୍ଡ୍ ଯୋଗାଡ କରିଥିଲେ ନରେନ୍ଦ୍ର । ଏଣେ ବୋଉର ଜିଦ୍‌ରେ ବିବାହ । ଡାକ୍ତରୀ ଡିଗ୍ରୀ ପାଇବା ବେଳକୁ ଦୁଇଟି ପିଲାର ବାପା ହୋଇ ସାରିଥିଲେ ସେ ।

'ପାଠ ପଢ଼ିବ ବୋଲି ପୁଅକୁ କ'ଣ ବୁଢ଼ା କରିବ ?'

ବୋଉର ଯୁକ୍ତିରେ ବାପା ହାର୍ ମାନିଲେ। ଏ ପାଖରେ ନରେନ୍ଦ୍ରଙ୍କର ଚାକିରି ନାହିଁ ।

କିଏ ବୁଦ୍ଧି ଦେଲା କେଜାଣି ସେ ଧାଇଁ ଗଲେ ବହୁତ ଦୂର । ଜଣେ ବେକାର ଡାକ୍ତର ଭାବରେ ବ୍ୟାଙ୍କ୍ ଋଣ ପାଇଗଲେ । କିଛି ଧାନ ଜମି ବନ୍ଧକ ଦେଇ ବାପା ଆଉ କିଛି ଅର୍ଥର ବ୍ୟବସ୍ଥା କରିଦେଲେ ।

ଯୋଗ୍ୟର ଡାକ୍ତର ପୁଅ । ବାପା ଉତ୍ସାହିତ କରିଥିଲେ । ମହାରାଷ୍ଟ୍ରର ଉପକଣ୍ଠରେ କୌଣସି ଏକ ସହରର ନିକାଞ୍ଚନ ସ୍ଥାନଟିଏ ମନୋନୀତ କରିନେଲେ ସେ । ସ୍ୱଳ୍ପ ଅର୍ଥ ବ୍ୟୟ କରି ଜମି ମାଲିକ ଠାରୁ ଜମିଟି ପାଇପାରିଥିବାରୁ ନିଜକୁ ଭାଗ୍ୟବାନ ମଣୁଥିଲେ ନରେନ୍ଦ୍ର ।

ଖୁବ୍ ଭଲ ଚାଲିଥିଲା ସବୁ । ସୁଦୃଶ୍ୟ ପ୍ରାସାଦୋପମ ରହିବା ଘର । ଘର ମଧ୍ୟରେ ସମସ୍ତପ୍ରକାର ଆଧୁନିକ ଉପକରଣ । ବିଦେଶୀ ମର୍‌ସିଡିଜ୍ କାର୍, ଡ୍ରାଇଭର୍ । ପିଲାମାନେ ପଢୁଥିଲେ ବମ୍ବେର ଆଭିଜାତ୍ୟସଂପନ୍ନ ଏକ ବୋର୍ଡିଂ ସ୍କୁଲ୍‌ରେ ।

ଯାଦୁକାଠି ଛୁଆଁଇଦେଇ କିଏ ଯେପରି ରାତିକ ଭିତରେ ତାଙ୍କୁ ଆରବ ସମ୍ରାଟଙ୍କ ଆସନରେ ବସାଇ ଦେଲା ।

ବିଶ୍ୱସ୍ତ ସହାୟିକା ସିଷ୍ଟର୍ ନିବେଦିତା । ସେ ହିଁ ଥିଲା ସବୁ । ତାଙ୍କର ହୃଦୟ ଅଧିକାର କରିଥିଲା ସେ ।

ପାର୍ଶି ଝିଅ, ସୁନ୍ଦରୀ, ଶିକ୍ଷିତା, ଅତ୍ୟାଧୁନିକା । ତା'ର ପଦଟିଏ କଥାରେ ମୋହିତ ହୋଇ ଧାଇଁ ଆସୁଥିଲେ ସେମାନେ ।

ସେଭଳି ଅସୁବିଧାରେ ନ ପଡିଲେ ଡାକ୍ତର ନରେନ୍ଦ୍ରଙ୍କ ପାଖକୁ କିଏ କାହିଁକି ଆସନ୍ତା ? ସେମାନେ ସମସ୍ତେ ପ୍ରାୟ କୋଟିପତି । ମହାସମୁଦ୍ରରୁ ବିନ୍ଦୁଟିଏ ଜଳ ଛିଞ୍ଚିଦେଲେ କିଛି ଅସୁବିଧା ହୁଏ ନାହିଁ । ବରଂ ନରେନ୍ଦ୍ର ସେମାନଙ୍କର ସମ୍ମାନ ସୁରକ୍ଷିତ ରହିବାର ବ୍ୟବସ୍ଥା କରନ୍ତି ।

କେତେ କମ୍ ବୟସର ଝିଅ, ଏକାକିନୀ ବିବାହିତା ବୋହୂଟିଏ ଅନ୍ୟ ସହ ଅବୈଧ ସଂପର୍କର ଶୀକାର ହୋଇ ଅବାଞ୍ଛିତ ମାତୃତ୍ୱ ଲାଭ କରି ଟିକିଏ ସାହାଯ୍ୟ ପାଇଁ ଧାଇଁ ଆସିଛି ଡାକ୍ତରଙ୍କ ପାଖକୁ । ସ୍ୱାମୀ ବିବାହ ପରେ ପରେ ସୁଦୂର ପାଶ୍ଚାତ୍ୟରେ ମାତ୍ର ବର୍ଷଟିଏ ପାଇଁ । ଅଥଚ ତା' ଜୀବନ ଦୁର୍ବିସହ ହୋଇ ଉଠିଛି । କିଏ ତାକୁ ଏ

ବିପଦରୁ ରକ୍ଷା କରନ୍ତା ? କୋଉଠି ସେ ବିଶ୍ୱାସର ସହ ମନଖୋଲି କହି ପାରନ୍ତା ତା' ଚରମ ଦୁର୍ବିପାକର କଥା ?

'ନୋ ପ୍ରବ୍ଲେମ୍, ମ୍ୟାଡମ୍ । ଦିସ୍ ଇଜ୍ କ୍ୱାଇଟ୍ ନ୍ୟାଚୁରାଲ୍ । ୟୁ ଆର୍ ଏ ହ୍ୟୁମାନ୍‌ବିଙ୍ଗ୍, ନଟ୍ ଏ ସେଣ୍ଟ୍ ।'

ସିଷ୍ଟର୍ ବୋହୂଟିର ମନୋବଳ ବଢ଼ାଇବାରେ ସାହାଯ୍ୟ କରେ ।

ବୋହୂଟି ମାତ୍ର କେତୋଟି ଦିନପରେ ଫେରିଯାଏ ନରେନ୍ଦ୍ରଙ୍କ ନର୍ସିଂହୋମ୍‌ରୁ । ଏଭଳି ଯତ୍ନ ନିଆଯାଏ ସେଠାରେ ଦେଖିଲେ ମନେହୁଏ କେବେ ବି ତା'ର କିଛି ଅସୁବିଧା ହୋଇ ନ ଥିଲା ।

ଏ ତ ଜଣକର କଥା ନୁହଁ, ସେମାନେ ଆସନ୍ତି ବହୁ ସଂଖ୍ୟାରେ ଅଦ୍ଭୁତ ପ୍ରକାରର ସମସ୍ୟାମାନ ନେଇ ।

ବିଳମ୍ବିତ ରାତ୍ରିରେ ସିଷ୍ଟର୍ ସହ କୌଣସି ଏକ ସୌଖୀନ୍ ହୋଟେଲ୍ କକ୍ଷରେ ବିଶ୍ରାମ ନେବା ସମୟରେ ନରେନ୍ଦ୍ର କହନ୍ତି, 'ବିଜ୍ଞାନ, ବିଶେଷ କରି ଡାକ୍ତରୀ ବିଜ୍ଞାନ ବେଶ୍ ଉନ୍ନତ ସ୍ତରରେ ପହଞ୍ଚି ସାରିଛି ଏ ଆଧୁନିକ ଯୁଗରେ । ଅଥଚ ଏ ମଣିଷମାନେ ଖୁବ୍ ବୋକା ହୋଇ ରହିଯାଇଛନ୍ତି ।'

'ୟୁ ଆର୍ ରାଇଟ୍, ଡକ୍ଟର୍ ? ହ୍ୱାଟ୍ ଇଜ୍ ଦି ନେସିସିଟି ଅଫ୍ କମିଙ୍ଗ୍ ଟୁ ଅସ୍ ?'

'ଓଃ ନୋ ନୋ, ଲେଟ୍ ଦେମ୍ କମ୍ ।' ନରେନ୍ଦ୍ରଙ୍କ ବାହୁ ବନ୍ଧନରେ ହସି ହସି ବେଦମ୍ ହୁଅନ୍ତି ସୁନ୍ଦରୀ ନିବେଦିତା ।

ରାତିରେ ଘରକୁ ଫେରିବାର ଆବଶ୍ୟକତା ନାହିଁ । ଡ୍ରାଇଭର୍, ଗାଡ଼ି, ପ୍ରଚୁର ଅର୍ଥ ନେଇ ନିଜର ଅନ୍ତରଙ୍ଗ କେତେ ଜଣଙ୍କ ସହ ପତ୍ନୀ ନନ୍ଦିତା ବୁଲାବୁଲି କରିବାକୁ ଯାଇଛନ୍ତି । ଫୋନ୍‌ରେ ନରେନ୍ଦ୍ର କହନ୍ତି,

'ପ୍ଲିଜ୍ ନନ୍ଦିତା, କ୍ଷମା କରିଦିଅ । ଆଇ ଆମ୍ ଟୁ ବିଜି । ତୁମେ ତ ଡାକ୍ତରଙ୍କ ପତ୍ନୀ । ସବୁ ବୁଝୁଥିବ । ଏନ୍‌ଜୟ ୟିୟୋରସେଲ୍‌ଫ, ଡାର୍ଲିଂ ।'

ନନ୍ଦିତା ସ୍ୱାମୀଙ୍କର ଏଭଳି କିଛି କଥାରେ ସବୁ ଭୁଲିଯାଏ । ବାନ୍ଧବୀମାନଙ୍କୁ କହେ, 'ଭାଗ୍ୟରେ ଥିଲେ ଏଭଳି ମଣିଷ ମିଳନ୍ତି । ଏ ସଂସାରରେ ମୋଠାରୁ ସୁଖୀ କିଏ ?'

ପତ୍ନୀର ମନର ଏହି ଭାବନାକୁ ପଢ଼ିନେଇ ପାରନ୍ତି ନରେନ୍ଦ୍ର । ବିଚରା

ନନ୍ଦିତା.... । ଟିକିଏ ବୁଝି ଥାଆନ୍ତା କି କ'ଣ ଚାଲିଛି ? କିପରି ଅଜସ୍ର ଅର୍ଥ ଅନାୟାସରେ ନରେନ୍ଦ୍ରଙ୍କ ହାତକୁ ଆସିପାରୁଛି ।

କେବେ ସେ ଏ ସଂପର୍କରେ ଜାଣିବାକୁ ଚାହିଁ ନାହିଁ । କେବେ ଜିଦ୍ କରି ନାହିଁ ଜାଣିବା ପାଇଁ । କେବେ ବି ଥିରେ ତାଙ୍କୁ ଆଶ୍ଚର୍ଯ୍ୟ କରି ଆସି ପହଞ୍ଚିଯାଇ ନାହିଁ ତାଙ୍କ ସୁବିଖ୍ୟାତ ନର୍ସିଂହୋମ୍‌ରେ । କହିନାହିଁ, 'ଥାଉ, ଏସବୁ ଦରକାର ନାହିଁ । କ'ଣ କରୁଚ କୁହତ ? ଆମ ପିଲାଙ୍କର ଅମଙ୍ଗଳ ହେବ । ଆମ ସଂସାର ଜଳିଯିବ । ମୋ କଥା ମାନ । ତୁମକୁ ଜଗନ୍ନାଥଙ୍କ ରାଣ । ଏମିତି କର ନାହିଁ ।'

କିଛି ବୁଝି ନ ବୁଝିବା ଭଳି ବସ୍ତୁଟିଏ ସେ, ମଣିଷ ନୁହେଁ ।

ଓଃ ନରେନ୍ଦ୍ରଙ୍କ ମୁଣ୍ଡରେ ଯନ୍ତ୍ରଣା ଆରମ୍ଭ ହୋଇଯାଇଛି । ଉଠିଯାଇ ଲାଇଟ୍ ଲିଭାଇଦେଇ ପାଖ ନୀଳବତୀଟି ଜଳାଇ ଦେଲେ ସେ । ନ ଶୋଇ ଝରକା ପାଖ ସିଟ୍‌କୁ ଆଉଜି ବସିଲେ । ଏସବୁ ଚିନ୍ତା ତାଙ୍କୁ ପକ୍ଷାଘାତ ରୋଗୀ କରିଦେବ ।

ବାହାରୁ ଆସୁଥିବା ଥଣ୍ଡା ପବନ ଖୁବ୍ ଭଲ ଲାଗୁଛି । ନିରନ୍ଧ୍ର ଅନ୍ଧକାରରେ ଟ୍ରେନ୍‌ଟି ଆଗେଇ ଯାଉଛି । ଗଛ, ପାହାଡ, ସବୁଜ ବନାନୀ, ଭରପୂର ଧାନକ୍ଷେତ, ସ୍ୱଚ୍ଛ ସୁନ୍ଦର ନଦୀ, ଛୋଟ ଛୋଟ ଗାଁସବୁ କିଛି ସେ ଦେଖିପାରୁ ନାହାଁନ୍ତି ଏ ଅନ୍ଧାରରେ । ଠିକ୍ ତାଙ୍କ ଜୀବନ ଭଳି । ସବୁଥିଲା, କିଛି ନାହିଁ । ଏବେ ଏବେ ଝଲମଲ୍ ଆଲୋକର ବନ୍ୟା । ହଠାତ୍ ମାଡି ଆସିଛି ଘନ ଅନ୍ଧକାର ।

ନନ୍ଦିତା କିଛି ବୁଝିଲା ନାହିଁ । କିଛି ଜାଣିଲା ନାହିଁ । ଅବହେଳାରେ ତା' ଜୀବନ ଶେଷ ହୋଇଗଲା ।

'ଏପରି କ୍ୟାନସର୍ ରୋଗୀ ପାଇଁ ଯେତେ ଟଙ୍କା ଖର୍ଚ୍ଚ କଲେ ସେ କୋଉ ଭଲ ହୋଇ ପାରୁଛି ? ବରଂ ଗାଁରେ ରହିବା ପାଇଁ ସେ କେତେ ଦିନରୁ ଲଗାଇଥିଲା । ଏଇଠି ଶାନ୍ତିରେ ଶେଷ ନିଶ୍ୱାସ ସେ ନେଇ ପାରିବ ।'

'କ'ଣ କହୁଚ, ଭାଇ ?' ସାନଭାଇ ଆଶ୍ଚର୍ଯ୍ୟରେ ତାଙ୍କୁ ଚାହିଁଲା ।

'ସତ କଥା କହିବାରେ କ'ଣ ଅଛି ?'

ନରେନ୍ଦ୍ର ଗାଁରେ ନନ୍ଦିତାକୁ ଛାଡିଦେଇ ଗଲେ । ନିରବରେ କହିଲେ, 'ଥା ନନ୍ଦିତା, ଏହି ତୋର ପ୍ରାପ୍ୟ । ଏହି ତୋର ଭାଗ୍ୟ । ମୁଁ କ'ଣ କରିପାରିବି ?' ସେଇ ଯେ ଛାଡିଦେଇ ଆସିଥିଲେ, ଜୀବନରେ ଆଉ ନନ୍ଦିତାକୁ ଦେଖି ପାରିଲେ ନାହିଁ । ସାନଭାଇର ଖବର ପାଇ ପିଲା ଦୁହିଁଙ୍କୁ ନେଇ ପହଞ୍ଚିବା ବେଳକୁ ନନ୍ଦିତାର

ମର ଶରୀର ନୂଆଶାଢ଼ି, ଶଙ୍ଖା, ସିନ୍ଦୂରରେ ସୁସଜ୍ଜିତ ହୋଇ ତାଙ୍କୁ ଅପେକ୍ଷା କରିଥିଲା ।

ପୁଅ ଦୁହେଁ ମା'କୁ ହରାଇ ଅନାଥଭଳି ବିକଳରେ କାନ୍ଦିଥିଲେ । ନରେନ୍ଦ୍ରଙ୍କ ଆଖିରେ ଲୁହ ନ ଥିଲା । ଗୋଟିଏ ଦାୟିତ୍ୱ ଶେଷ ହେଲା ।

ଯାହାହେଉ ପିଲାଙ୍କ ନାମରେ ବ୍ୟାଙ୍କ୍ ଡିପୋଜିଟ୍‌କୁ ସେ ପାପାର୍ଜିତ ଧନ କହିପାରିବେ ନାହିଁ ।

ପ୍ରଥମେ ପ୍ରଥମେ ନର୍ସିଂହୋମ୍‌କୁ ପ୍ରଖ୍ୟାତ କରିବା ପାଇଁ ସେ ଖୁବ୍ ପରିଶ୍ରମ କରିଛନ୍ତି । ସେ ଅର୍ଥକୁ ଅତି ଆଦରର ତାଙ୍କ ସନ୍ତାନ ଦୁଇଟିଙ୍କ ପାଇଁ ସଞ୍ଚିଦେଇ ସେମାନଙ୍କୁ ଦୂରେଇ ରଖିଛନ୍ତି ତାଙ୍କ ପାଖରୁ ।

ସାରା ଜୀବନ ଖୁବ୍ ଭଲ ସ୍କୁଲ୍, କଲେଜ୍, ବିଶ୍ୱବିଦ୍ୟାଳୟରେ ଛାତ୍ର ଜୀବନ ବିତାଇଦେଲେ ସେମାନେ ।

ଜୀବନ ଗଢ଼ାହେଲା ମାର୍ଜିତ ପରିବେଶରେ । ପିଲା ଦିନରୁ ଜେଜେବାପା ସେମାନଙ୍କୁ ଶିଖାଇଛନ୍ତି ସେଇ ମନ୍ତ୍ର - ନିଜକୁ ନିଜେ ସୁନ୍ଦର କରି ଗଢ଼ । ଗୁରୁଶ୍ରେଷ୍ଠ, ପୁସ୍ତକ ହିଁ ଜୀବନ । ପାଠ ପଢ଼ିବା ତୁମର ମହାନ୍ କର୍ତ୍ତବ୍ୟ ।

ସେ ଦୁହେଁ କୂଳରେ ଲାଗିଲେ । ହୁଏତ ଆଦର୍ଶ ଶିକ୍ଷକ ସେମାନଙ୍କର ଜେଜେବାପାଙ୍କ ଆଦର୍ଶରେ ଅନୁପ୍ରାଣିତ ହେଲେ ପିଲା ଦୁହେଁ । ଛୁଟି ହେଲେ ନନ୍ଦିତା ପିଲାଙ୍କୁ ନେଇ ଗାଁକୁ ଚାଲିଯାଆନ୍ତି । ଯାଇ ପାରନ୍ତି ନାହିଁ ନରେନ୍ଦ୍ର । ପିଲାଏ ସବୁ ବଡଛୁଟି ଗାଁରେ ଜେଜେବାପାଙ୍କପାଖରେ ବିତାଇଥାଆନ୍ତି ।

ସୁବିଖ୍ୟାତ ଡାକ୍ତର ନରେନ୍ଦ୍ର ସାମନ୍ତଙ୍କର ସମୟ କାହିଁ ଯେ ସ୍ତ୍ରୀ, ପିଲା, ବାପା, ମା'ଙ୍କସହ ହସ ଖୁସିରେ ଦିନ ବିତାଇ ଥାଆନ୍ତେ ?

ନିବେଦିତା ତାଙ୍କୁ କର୍ମତତ୍‌ପର କରେ । ହାତରେ ଧରାଏ ଅଜସ୍ର ଅର୍ଥ । ସେସବୁର ହିସାବ ଆବଶ୍ୟକ ହୁଏ ନାହିଁ । କିଏ କୋଉଠି ଏତେ ବେଶୀ ଅର୍ଥ ରୋଜଗାର କରେ ଯେ ?

ତଥାପି ଅର୍ଥର ଲୋଭକୁ କିଏ ବା ଏଡାଇ ପାରିବ ? କିଙ୍ଗ୍ ମିଡାସ୍ ବି ପାରି ନ ଥିଲେ ।

'ହଁ, ହଁ ମୁଁ ଚାହେଁ ଅଜସ୍ର ସ୍ୱର୍ଣ୍ଣ । ବାଃ ଦେଖେ କିଭଳି ସମ୍ଭବ ? ରାଜୋଦ୍ୟାନ, ସୌଖୀନ୍ ପୁଷ୍ପବାଟିକା, ସୁମିଷ୍ଟ ଫଳ ସହ ବୃକ୍ଷସବୁ, ଏପରିକି ଅଳିଅଳ ରାଜକନ୍ୟା, ମିଡାସ୍‌ଙ୍କର ପ୍ରାଣ ପ୍ରତିମା କୋମଳମତି କନ୍ୟାଟି ସ୍ୱର୍ଣ୍ଣ ପ୍ରତିମାରେ ପରିଣତ ହେଲା ।

ଏତେ ସତ୍ତ୍ୱେ ସେଇ ପିଲା ଦିନର ଗଳ୍ପଟି ତାଙ୍କ ଆଖିରେ ଲୁହସହ ବି ତାଙ୍କୁ ହସିବାକୁ ଦେଉଛି ।

'ସାର୍, ଆଇ ଉଇଲ୍ ଡିସ୍କସ୍ ସମଥିଙ୍ଗ ସିରିୟସ୍ ।' ନିବେଦିତା ଆଖି ନଚାଇ କହିଲା, 'ଇଫ୍ ଇଉ ଏଗ୍ରି ଉଇ ଉଇଲ୍ ସେଲିବ୍ରେଟ୍ ଦିସ୍ ନାଇଟ୍ ।' ନିବେଦିତା ସାହସ ପାଇଗଲା ।

'ତୁମେ ଯାହା କହିବ ସିଷ୍ଟର୍, ମୋର ଆଦୌ ଆପତ୍ତି ନାହିଁ । ତେବେ ବ୍ୟସ୍ତ କାହିଁକି ? ଏଇ ମାତ୍ର ଦିନ ଆରମ୍ଭ ହେଲା । ରାତି ତଥାପି ବିଳମ୍ବରେ ଆସିବ । ଡୁ ଇଓର୍ ଡ୍ୟୁଟି ନାଓ ।'

ଏତେ ଦିନର ସଂପର୍କ ମଧ୍ୟରେ ନିବେଦିତା, ନରେନ୍ଦ୍ର ପରସ୍ପରକୁ ବେଶ୍ ଚିହ୍ନିନେଇଥିଲେ ।

ନିବେଦିତା ଯାହା କରୁଛି ଅନ୍ୟାୟ କ'ଣ ? ଯାକୁ ହତ୍ୟାର ଆଖ୍ୟା ଦିଆଯାଇ ପାରିବ ନାହିଁ । କେତୋଟି ବା ଏଭଳି କେଶ୍ ଆସିବ ? ପ୍ରଥମତଃ ଗର୍ଭପାତ କରାଇବାର ଆବଶ୍ୟକତା ଏ ଯୁଗରେ ନାହିଁ । ସେମାନେ ପୂର୍ବରୁ ସାବଧାନ । ତଥାପି ଆକ୍ସିଡେଣ୍ଟ; ବୋକାମାନେ ଧାଇଁ ଆସୁଛନ୍ତି ।

ଏସବୁ ମଧ୍ୟରେ ବିଳମ୍ବ ହୋଇ ପିଲାଟି ଯଦି ଜନ୍ମ ହୋଇଗଲା ଏବଂ ତାକୁ ପୃଥିବୀରୁ ବିଦାୟ ଦେବାକୁ ସେମାନେ ଯଦି ଚାହିଁଲେ, ଡାକ୍ତରଙ୍କର ଭୁଲ କୋଉଠି ରହିଲା ? ଏ ପାପ ପୁଣ୍ୟ ସେମାନଙ୍କର । ସେଥିରେ ଆମେ କାହିଁକି ମୁଣ୍ଡ ଖେଳାଇବା ? ଆମର ଧର୍ମ ମା'କୁ ସୁସ୍ଥ କରି ଫେରାଇଦେବା ।

ଶିଶୁର ହତ୍ୟା ? ସେ ତ କୌଣସି ଦିନ ଏମିତି ଚିନ୍ତା କରି ନାହାଁନ୍ତି ? ଚମକି ପଡିଲେ ସେଦିନ ଡାକ୍ତର ।

ନିବେଦିତା ତାଙ୍କୁ ସୁନ୍ଦର ଭାବରେ ବୁଝାଇ ଦେଲା । ସେ ଓ ନିବେଦିତା । କେହି କୋଉଠି ଜାଣିବେ ନାହିଁ, ସହଜରେ କାର୍ଯ୍ୟସାଧନ । ଏ ବ୍ୟସ୍ତ ପୃଥିବୀରେ ଅନ୍ୟ କାହା ପ୍ରତି ଦୃଷ୍ଟି ଦେବାକୁ କାହାର ବା ସମୟ ଅଛି ?

ନରେନ୍ଦ୍ର ବିଶେଷ ଚିନ୍ତା କରିବାକୁ ସମୟ ପାଇଲେ ନାହିଁ । ନିବେଦିତା ସହ ସେ ରାତିର ସୁଖ ଏବେ ବି ଏ ବୟସରେ ତାଙ୍କୁ ରୋମାଞ୍ଚିତ କରେ ।

ସେ ଏମିତି ଏକ ରାସ୍ତାରେ ପହଞ୍ଚି ଯାଇଥିଲେ, ସେଥିରେ ଆଗେଇବା

ତାଙ୍କର କର୍ତ୍ତବ୍ୟରେ ପରିଣତ ହୋଇଥିଲା । ସମ୍ଭବତଃ ତାଙ୍କର ହୃଦୟ, ଆତ୍ମା ଓଡିଶାର କେଉଁ ଏକ ଅଖ୍ୟାତ ପଲ୍ଲୀରେ ଆତ୍ମଗୋପନ କରିଥିଲେ ।

ନୋଚେତ୍ ସେଦିନ ବି ନିବେଦିତା ତାଙ୍କ ବାହୁ ବନ୍ଧନରେ ନିଜକୁ ହଜାଇଦେଇ କହିଥିଲା, 'ସାର୍, ଓ୍ୱାନ୍ ମୋର ଆଇଡିଆ ।'

'ନିବେଦିତା, ଏ ସୁଖ ମୁହୂର୍ତ୍ତରେ ମୁଁ କିଛି ଶୁଣିବାକୁ ଚାହେଁ ନାହିଁ ।' ନିବେଦିତା ତାଙ୍କୁ ଆଉ ଏକ ଧନରତ୍ନ ପରିପୂର୍ଣ୍ଣ ଅନାବିଷ୍କୃତ ଦ୍ୱୀପର ସନ୍ଧାନ ଦେଇଥିଲା ।

ସେମାନେ ଅବୈଧ ନୁହଁନ୍ତି । ଅଗ୍ନିକୁ ସାକ୍ଷୀ ରଖି ବିବାହ କରିଥିବା ସ୍ୱାମୀ, ସ୍ତ୍ରୀ । ପୁତ୍ର ସନ୍ତାନ ହିଁ ସେମାନଙ୍କର କାମ୍ୟ । କନ୍ୟା ସେମାନଙ୍କ ପାଇଁ ଅଭିଶାପ । ତେଣୁ ଶିଶୁ କନ୍ୟାଟି ଜନ୍ମହେବା ମାତ୍ରକେ ତାକୁ ମୃତ ଶିଶୁ ଭାବେ ଗ୍ରହଣ କରିବାକୁ ସେମାନେ ଇଚ୍ଛା କରନ୍ତି । ସହଜ ଭାବରେ କଥାଟି ବୁଝାଇ ଦେଲା କ୍ଲିନିକ୍‌ର ହେଡ୍ ସିଷ୍ଟର୍ ସୁନ୍ଦରୀ ନିବେଦିତା ।

ଶିଶୁ କନ୍ୟାର ହତ୍ୟା । କଥାଟା ନିରବ ରହି ଟିକିଏ ଚିନ୍ତା କରିଥିଲେ ସେଦିନ ନରେନ୍ଦ୍ର । ନା - ଏଥିରେ ଅରାଜି ହେବାର କ'ଣ ଅଛି ? ପୃଥିବୀରୁ କିଛି ଲୋକସଂଖ୍ୟା କମ୍ କରି ଦେବାରେ ସେ ସାହାଯ୍ୟ କରିବେ । ସମାଜ, ପରିବାରକୁ ଅସ୍ୱସ୍ତିକର ଜୀବନରୁ ମୁକ୍ତି ମିଳିବ । ସେଇ ଏକା ରାସ୍ତାରେ ଚାଲିବା ଭଳି କଥା । କ'ଣ ଅଛି ସେଥିରେ ? ସେ କ'ଣ ସନ୍ନ୍ୟାସୀ ନା ମହାମାନବ ! ଏତେ ସବୁ ଭାବିହେଲେ ଏ କାର୍ଯ୍ୟ କରିପାରିବେ ନାହିଁ । ସେ ନ କଲେ ଅନ୍ୟ କେହି କରିବ । ସେ କ'ଣ ଜାଣନ୍ତି ନାହିଁ ? ଚୋରା ସୁନା କାରବାର କରିବା ଭଳି ପଂଝାଏ ଖଣ୍ଡ କ୍ଲିନିକ୍ ଖୋଲି ବସି ଚିକିତ୍ସା କରିବା ନାଁରେ ଏହି କାର୍ଯ୍ୟ କରି ଚାଲିଛନ୍ତି । ତେଣୁ ଡାକ୍ତର ନରେନ୍ଦ୍ର ସାମନ୍ତ ମନା କରିଦେଲେ ସେମାନେ ଅନ୍ୟ ଡାକ୍ତର ପାଖକୁ ଯିବେ । କେହିଜଣେ ହେଲେ କରିବ । ଏ କାମଟି ବନ୍ଦ ହୋଇ ଯିବକି ?

ନିବେଦିତା ନିଜେ ସେ ଦାୟିତ୍ୱ ନେଲା । ଅର୍ଥର ପ୍ରାଚୁର୍ଯ୍ୟ ତାଙ୍କୁ ଆବୃତ କରିଥିଲା । ବିଶ୍ୱସ୍ତ ନିବେଦିତାର ନର୍ସିଂହୋମ୍‌ରୁ ପାଉଥିବା ମାସିକ ବେତନର ପରିମାଣ ଅନ୍ୟ ଷ୍ଟାଫ୍‌ମାନେ ଜାଣିଥାଆନ୍ତି । ଅଥଚ କେତେ ଅର୍ଥ ସେ ନିଜର ପ୍ରାପ୍ୟ ଭାବେ ନିଏ, କେତେ ଦିଏ ନରେନ୍ଦ୍ରଙ୍କୁ, ସେ ବିଷୟ ନିବେଦିତାକୁ ପଚାରିବାକୁ ଇଚ୍ଛାହୁଏ ନାହିଁ । ଅଜସ୍ର ଅର୍ଥର ସ୍ରୋତ ପ୍ରତ୍ୟହ ପହଞ୍ଚିଯାଏ ତାଙ୍କ ପାଖରେ ।

ମା' ଜାଣିଥାଏ କି ନା, ପ୍ରସବ ପରେ ଶିଶୁକନ୍ୟାର ପତ୍ତା ନ ଥାଏ । ଅଚ୍ଛ

କିଛି ଦିନ ପରେ ମା'କୁ ସୁସ୍ଥ କରାଇ ପଠାଇଦିଅନ୍ତି ସେମାନେ । ଡାକ୍ତରଙ୍କ ହାତରେ ମୋଟା ଅଙ୍କର ପ୍ରାପ୍ୟ ।

ଅନ୍ୟ କେଉଁ ଶିଶୁଟିର ବାପାଙ୍କ ନିର୍ଦ୍ଦେଶରେ ନିଦ୍ରା ଔଷଧରେ ଶୋଇଯାଇଥିବା ମା'କୁ ଉଠିବା ପରେ କୁହାଯାଏ,

'ଆପଣଙ୍କର ମୃତ ଶିଶୁଟିଏ ଜନ୍ମ ହୋଇଥିଲା । ଝିଅଟିଏ, କ'ଣ କରିବେ ? ଭାଗ୍ୟରେ ନାହିଁ ।' ନିବେଦିତାର ଚକ୍ଷୁ ଅଶ୍ରୁସଜଳ ହୁଏ ଦୁଃଖିନୀ ମା'ଟିକୁ ଏ ବିଷୟରେ ଜଣାଇବା ସମୟରେ ।

ମୋର କି ଦୋଷ ଅଛି କେଜାଣି ? ଦୁଇ ଦୁଇଥର ମଲାପିଲା ଜନ୍ମ ହେଲାଣି । ମା'ଟି ମୁଣ୍ଡରେ ହାତଦେଇ ବସେ । ବିଚାରୀ ଏ ହତ୍ୟାକାରୀମାନଙ୍କ ଚକ୍ରାନ୍ତର ଚକ୍ରବ୍ୟୂହ ମଧ୍ୟରେ ପଶିପାରେ ନାହିଁ । କର୍ମ ଆଦରି ଫେରିଯାଏ ନରେନ୍ଦ୍ରଙ୍କ ନର୍ସିଂହୋମ୍‌ରୁ ।

ଠିକ୍ ଏମିତି ଦିନେ....

ସେଦିନ କୋଉ ଅଶୁଭ ବେଳାରେ ସୁଦୂର ଓଡିଶାରୁ ଆସିଥିଲେ ମା', ପୁଅ ଦୁଇଜଣ । ଯୁବକ ଭଦ୍ରଲୋକ ଜଣକ ମନେ ହେଉଥିଲେ ମେରୁଦଣ୍ଡବିହୀନ । ଭଦ୍ରମହିଳାଙ୍କ ବୟସ ଷାଠିଏ, ପଞ୍ଚଷଠି ମଧ୍ୟରେ । ସେ ଅନର୍ଗଳ ଉପଦେଶ ଦେଉଥିଲେ ଡାକ୍ତରଙ୍କୁ ।

'ଦେଖନ୍ତୁ ଡାକ୍ତର, ଖୁବ୍ ନାଁ ଶୁଣିଛି ଆପଣଙ୍କର । ଆପଣ ଟଙ୍କା ପାଇଁ ବ୍ୟସ୍ତ ହେବେ ନାହିଁ । ଯାହା ଚାହିଁବେ ଦେବି । କିନ୍ତୁ ଗୋଟିଏ ସର୍ତ୍ତ । ମୋ ବୋହୂର ଯେପରି କିଛି ଅସୁବିଧା ହେବ ନାହିଁ । ପୁଅଟିଏ ହେଲେ ତ କଥା ନାହିଁ । ଝିଅ ଜନ୍ମ ହେବାମାତ୍ରେ ଯେପରି କାନ୍ଦିବାର ସୁଯୋଗ ପାଇବନାହିଁ ।'

'ତୁ ଏସବୁ କ'ଣ କହି ଚାଲିଛୁ, ବୋଉ ? ତୋର ମୁଣ୍ଡ ଠିକ୍ ଅଛିତ । ଶୁଣନ୍ତୁ ଡାକ୍ତର, ଆପଣଙ୍କୁ ମୋର କହିବାର ଅଛି । ରହ ବୋଉ ।'

'ନା, ତୋର କିଛି କହିବା ଦରକାର ନାହିଁ ।'

ଗାୟତ୍ରୀ ନିବେଦିତା ସହ କଥା କହିବାକୁ ଇଚ୍ଛା କଲେ ନାହିଁ । ଅଭଦ୍ରାମିର ସୀମା ଲଙ୍ଘନ କରୁଥିବା ମା'ଙ୍କୁ ବାରମ୍ବାର ମନା କଲେ ବି ପୁଅର ବାରଣ ନ ମାନି ସେ ପଶି ଆସିଥିଲେ ଡାକ୍ତରଙ୍କ କୋଠରୀକୁ । ଏବଂ ପହଞ୍ଚୁ ପହଞ୍ଚୁ ଅନର୍ଗଳ କଥା କହିବା ଆରମ୍ଭ କରିଦେଲେ । ସେ ପାଖରେ ପଚିଶ, ଛବିଶ ବର୍ଷର ଅଜଣା ତରୁଣୀଟି

ସମ୍ମୁଖରେ ଏ ସମସ୍ତ କଥା ବିନା ଉପକ୍ରମଣିକାରେ ଆରମ୍ଭ କରିବା ଯେ କେତେଦୂର ସମୀଚୀନ, ତା' ଭାବିବା ପାଇଁ ଗାୟତ୍ରୀଙ୍କର ବୁଦ୍ଧିର ଅଭାବ ଥିଲା ।

ପ୍ରଭାତଙ୍କ ସହ ଡାକ୍ତରଙ୍କର ସମସ୍ତ କଥାବାର୍ତ୍ତା ଫୋନ୍‌ରେ ହିଁ ପ୍ରାୟ ସମାପ୍ତ ହୋଇଥିଲା । ତଥାପି ବୋଉ ଯେ ଏଭଳି ପ୍ରସ୍ତାବ ଦେଇ ତାଙ୍କୁ ଅପ୍ରସ୍ତୁତ କରିବ, ତା' ସେ ଭାବିନଥିଲେ । ବିଶେଷ କରି ଜଣେ ବାହାର ଲୋକ ସାମନାରେ ।

ନରେନ୍ଦ୍ର ଗାୟତ୍ରୀଙ୍କୁ କଥା କହିବା ବନ୍ଦ କରିବା ପାଇଁ ଅନୁରୋଧ କରି ସେଇ ଝିଅଟିକୁ ବିଦାୟ ଦେଇଥିଲେ । ଝିଅଟି କ'ଣ ମନେ କଲା କେଜାଣି ଏହି ମା' ପୁଅ ବସିଥିବା ସମୟରେ ଡାକ୍ତରଙ୍କର ଫଟୋଟିଏ ଉଠାଇ ନେଇ ନରେନ୍ଦ୍ରଙ୍କ ଠାରୁ ବିଦାୟ ନେଇ ଚାଲିଯାଇଥିଲା । କିନ୍ତୁ ଯାଇ ନ ଥିଲା ନରେନ୍ଦ୍ରଙ୍କ ନର୍ସିଂହୋମ୍‌ରୁ ।

ପ୍ରତିଟି କୋଠରୀ ବୁଲିବୁଲି ଦେଖିବା, କାମ କରୁଥିବା ଷ୍ଟାଫ୍, ଡାକ୍ତର, ନର୍ସ ଏପରିକି ସୁନ୍ଦରୀ ମୁଖ୍ୟ ପରିଚାଳିକା ସିଷ୍ଟର ନିବେଦିତାଙ୍କ ପ୍ରତି ସେମାନଙ୍କ ଅଲକ୍ଷ୍ୟରେ ସେ ଅଧିକ ସଚେତନ ହୋଇ ପଡିଥିଲା । ଡାକ୍ତରଙ୍କ କୋଠରୀରେ କିଛି ସମୟ ବସି ଆସିଥିବା ଏହି ତରୁଣୀଙ୍କୁ କିଏବା କାହିଁକି ବାରଣ କରିବ ? ଏମିତି ଅନେକେ ଆସୁଛନ୍ତି । କାହାର ସଂପର୍କୀୟାଙ୍କର ପିଲା ଜନ୍ମ ହେବାର ଥାଏ ତ ଅନ୍ୟ କିଛି ତତ୍‌ଜନିତ ସ୍ୱାସ୍ଥ୍ୟ ସମସ୍ୟା ବି ରହିଥାଏ । କ୍ୱଚିତ୍ କେହି ଜିଦ୍ କରନ୍ତି, 'ନା ଆପଣଙ୍କୁ ନୁହଁ, ଡାକ୍ତରଙ୍କ ସହ ଟିକେ କଥା କହିବାକୁ ଚାହେଁ ।'

ନିବେଦିତା ବାଧ କରିପାରେ ନାହିଁ । ତାଙ୍କର ଟଙ୍କା ଦରକାର, ଏମିତି ଜଣେ ଜଣେ ଯଦି ଫେରିଯିବେ ? ତେଣୁ ଡାକ୍ତରଙ୍କ ପାଖକୁ ସେମାନଙ୍କୁ ପଠାଇବାକୁ ବାଧହୁଏ ସେ ।

ମଂଜୁଳା ଶର୍ମା ନିଜକୁ ଜଣେ ଜର୍ଣ୍ଣାଲିଷ୍ଟ କହିବା ଆବଶ୍ୟକ ମଣି ନ ଥିଲା । ତା' କହିଲେ ଡାକ୍ତରଙ୍କ ପାଖରେ ପହଞ୍ଚିବାର ସୁବିଧା ହୁଏତ ମିଳିଥାଆନ୍ତା କି ନାହିଁ ?

ନରେନ୍ଦ୍ରଙ୍କ ପାଖରେ ପହଞ୍ଚି ନିଜର ପରିଚୟ ଦେବା ସହ ସେ କହିଲା, 'ଭାରତର ପ୍ରସିଦ୍ଧ ଗାଇନିକ୍ ସ୍ପେସିୟାଲିଷ୍ଟ୍ ନରେନ୍ଦ୍ର ସାମନ୍ତଙ୍କର ସାକ୍ଷାତକାର ମୁଁ ଏକ ପ୍ରସିଦ୍ଧ ଇଂରେଜୀ ପତ୍ରିକାରେ ଛାପିବାକୁ ଚାହୁଁଛି ।

ଜଣେ ବେକାର ଯୁବଡାକ୍ତର ଖୁବ୍ କମ୍‌ସମୟ ମଧ୍ୟରେ ଚିକିତ୍ସା ବ୍ୟବସାୟରେ ଅପୂର୍ବ ସଫଳତା ଦେଖାଇ ପାରିଛନ୍ତି । ଏହି ସଂପର୍କିତ ଲେଖାଟି ଅନ୍ୟମାନଙ୍କ ପାଇଁ ଆଦର୍ଶ ହେବ ।

ଜଣେ ପତ୍ରକାରର କର୍ତ୍ତବ୍ୟ ଆପଣଙ୍କ ଭଳି ଭାଗ୍ୟବାନ୍ ବ୍ୟକ୍ତିଙ୍କୁ ଲୋକଲୋଚନକୁ ଆଣିବା ।'

ପ୍ରତିଷ୍ଠା କିଏ ଚାହେଁ ନାହିଁ ? ସେଦିନ 'ମୋର ସମୟ ନାହିଁ' କହି ମଂଜୁଳା ଶର୍ମାଙ୍କୁ ସେ ଯଦି ବିଦାୟ ଦେଇଥାଆନ୍ତେ କିମ୍ବା କୌଣସି ଏକ ରେଷ୍ଟୁରାଣ୍ଟ୍‌କୁ ଡିନାର୍ ପାଇଁ ନିମନ୍ତ୍ରଣ କରି କଥାବାର୍ତ୍ତା କରିଥାଆନ୍ତେ ?

କି ଅସୁବିଧାରେ ସେ ପଡିଲେ ! ବୁଢ଼ୀ ଜଣଙ୍କ କଥା କହିବା ଆରମ୍ଭ କରିବା ବେଳକୁ ମଞ୍ଜୁଳା କଫି କପ୍ ଠିକ୍ ଓଠ ପାଖକୁ ଉଠାଇ ନେଇଥିଲେ । କଫି କପ୍‌ଟା ପିଇସାରିବା ମଧ୍ୟରେ କେତେ ଚିନ୍ତା, ଯୋଜନା ତାଙ୍କ ମୁଣ୍ଡରେ ସ୍ଥାନ ପାଇନଥିବ । କି ଭୁଲ କରିଥିଲେ ନରେନ୍ଦ୍ର ?

ମଂଜୁଳା ଶର୍ମା ତାଙ୍କୁ ଛାଡିଲା ନାହିଁ ।

ସମାଜ ବିଜ୍ଞାନରେ କୃତିତ୍ୱର ସହ ସ୍ନାତକୋତ୍ତର ଡିଗ୍ରୀ ନେଇଥିବା ଏହି ଉଜ୍ଜ୍ୱଳ ଝିଅଟି ସହ ଦୁଇପଦ କଥା କହି ଆନନ୍ଦିତ ହୋଇଥିଲେ ନରେନ୍ଦ୍ର । ସେ ଜାଣି ନ ଥିଲେ ସେଦିନ ତାଙ୍କ ପାଇଁ ଏକ ଅଶୁଭ ସଙ୍କେତ ନେଇ ଆସିଥିଲା ମଂଜୁଳା । ନର୍ସିଂହୋମ୍‌ର ସବୁ ଖବର ବୋଧହୁଏ ମଂଜୁଳା ଜାଣିପାରିଥିଲା । ସେଦିନ ମହା ଆନନ୍ଦରେ ହସହସ ମୁହଁରେ ନର୍ସିଂହୋମ୍‌ଟି ବୁଲି ଦେଖିଥିଲା ସେ । ତା'ର ଡାଇରୀଟିରେ କିଛି ଟିପି ରଖିଥିଲା ସେ ।

ହୋଇଥାଇ ପାରେ, ଖୁବ୍ ଭଲ ଲେଖାଟିଏ କରିବାର ମନଥିଲା ତା'ର । ନୋଚେତ୍ ଅନ୍ୟ ଷ୍ଟାଫ୍‌ଙ୍କ ସହ ବନ୍ଧୁତା କରି କିଛି ଲେଖି ନେଉଥିଲା କାହିଁକି ? ଗାର୍ଡ, ବେହେରା, ଝାଡୁଦେବା ଲୋକ କାହାକୁ ସେ ଛାଡି ନ ଥିଲା ।

ପ୍ରଥମେ ତ ଉଦ୍ଦେଶ୍ୟ ଭଲ ଥିଲା । ବୁଢ଼ୀଙ୍କ କଥାରୁ ଯଦି କିଛି ସନ୍ଦେହ କରିଥିବ । କେଉଁ ଷ୍ଟାଫ୍, ଅନ୍ୟ ସିଷ୍ଟର, ବେହେରା କାହା ପାଖରୁ ସଂଗ୍ରହ କରିଥିବ ନିବେଦିତାର ଘର ଠିକଣା । ନରେନ୍ଦ୍ରଙ୍କ ପ୍ରାସାଦ କାହାକୁ ଅବା ଅଜଣା ?

କେହି କିଛି ଜାଣନ୍ତି ନାହିଁ, ଏ ଧାରଣା ସଂପୂର୍ଣ୍ଣ ଭୁଲ । ସତେ କ'ଣ ନର୍ସିଂହୋମ୍‌ରେ କେହି ହେଲେ ଏସବୁର ଆଭାସ ପାଇଥିବ ?

ପାପ କ'ଣ ଲୁଚି ରହିପାରେ ? ସତ୍ୟ, ଯାହା ଘଟୁଛି ନିରନ୍ତର, ତାହା ଜଳ ଜଳ ଦେଖାଯାଉଛି ତ ଜଣଙ୍କ ଆଖିରେ ! ପାପୀଟି କେବଳ ଅନ୍ଧ ହୋଇଯାଏ ।

ମଂଜୁଳା ଫାଟକ ପାଖକୁ ଯାଇ ଫେରି ଆସିଥିଲା । ଅନେକ ସମୟ ଧରି

ବୁଢ଼ୀ ଏବଂ ପ୍ରଭାତ ଆସିଥିବା ଗାଡିର ଡ୍ରାଇଭର ସହ କଥାବାର୍ତ୍ତା କରିଥିଲା । ସମ୍ଭବତଃ ସେମାନେ ରହୁଥିବା ହୋଟେଲ୍‌ର ଠିକଣା ନୋଟ୍ କରିଥିଲା । ଓଡିଆ ଡ୍ରାଇଭରଟି ମଂଜୁଳାର ସୌଭାଗ୍ୟ କ୍ରମେ ଏଇ ସହରରରେ କିଭଳି ଯୁଟିଥିଲା, ତା' ଭାବିଲେ ଆଶ୍ଚର୍ଯ୍ୟ ହୁଅନ୍ତି ନରେନ୍ଦ୍ର । ପ୍ରଭାତଙ୍କ ସହର ବା ତାଙ୍କ ଗାଁ ଲୋକ ହୋଇଥିବ ସେ । ସେମାନଙ୍କ ପରିଚୟ, ଘର ଠିକଣା ସବୁ ଦେଇଥିଲା ଡ୍ରାଇଭର୍ । ହସ ହସ ମୁହଁରେ କହୁଥିଲା ସେ,

'ଆମ ପ୍ରଭାତବାବୁଙ୍କୁ ସେଠାରେ କିଏ ନ ଜାଣେ ଆଜ୍ଞା ? ସେ ତ ଆମର ଭାଇଠୁଁ ଅଧିକ । ଗାଁକୁ ପାଖ ହବ । ମୁଁ ତ ଏତେ ଦୂରରେ ରହିବି ନାହିଁ । ସେ ଆଉ ଖଣ୍ଡେ ଗାଡି କିଣିବେ । ମୁଁ ଚାଲିଯିବି ।'

ନିବେଦିତା ସବୁ ଶୁଣିଛି । ଯାହା ବୁଝିଛି, ଡାକ୍ତରଙ୍କୁ ବୁଝେଇଛି ।

ଏତେ ଖବର କିଭଳି ସଂଗ୍ରହ କଲା ମଂଜୁଳା ? ଶିକାରୀ କୁକୁରର ସିକ୍‌ସ୍‌ଥ୍ ସେନସ୍ ଭଳି ମଂଜୁଳା ସବୁ ସଂଗ୍ରହକରି ପହଞ୍ଚୁଥିଲା ନିବେଦିତାର ଘରେ । ସେ ଠିକ୍ ଜାଣିଥିଲା, ନିବେଦିତାକୁ ଅକ୍ତିୟାର ନ କଲେ କିଛି ହୋଇ ପାରିବ ନାହିଁ ।

ନିବେଦିତାର ଛୋଟ ଆପାର୍ଟ୍‌ମେଣ୍ଟ୍‌ରେ ତା' ବ୍ୟତୀତ ବିଲେଇ ଛୁଆଟିଏ ମଧ ନ ଥିଲା । ଅତ୍ୟନ୍ତ ବୁଦ୍ଧିମତ୍ତାର ସହ ପର୍ସରେ ପିସ୍ତଲଟିଏ ରଖି ସେ ପହଞ୍ଚୁଥିଲା ନିବେଦିତାର ଘରେ ।

ହୋଇପାରେ ପେପରବାଲା, ଦୁଧବାଲାର କଲିଂବେଲ୍ ଟିପିବା ସମୟରେ ପହଞ୍ଚଯାଇ ପୂର୍ବ ପରିଚୟ ଦେଇ ଭିତରକୁ ପ୍ରବେଶ କରିଥିବ ମଂଜୁଳା ।

ଜଣେ ରୋଗୀକୁ ଘର କବାଟ ଖୋଲିଥିବା ବେଳେ ଫେରାଇ ଦେବା ନିହାତି ଅସୁବିଧାଜନକ । ଯା ମଧ ବୁଝିଥିବ ନିବେଦିତା ।

ତା' ପାଖରେ ଅନ୍ୟ ଉପାୟ ନ ଥିବାବେଳେ ନିବେଦିତାକୁ ସେଇ ଅଶୁଭ ସକାଳେ ବେଶ୍ କିଛି ସମୟ ଗୋଟିଏ ଚଉକିରେ ବସିବାକୁ ହୋଇଥିଲା ମଂଜୁଳାର ନିର୍ଦ୍ଦେଶରେ ।

ଅତ୍ୟନ୍ତ ବୁଦ୍ଧିମତୀ ମଂଜୁଳା ଜାଣିଥିଲା, ସତ୍ୟ କିପରି ଆଦାୟ କରିବାକୁ ହୁଏ । ନିବେଦିତା ଭୟରେ ଅସ୍ଥିର ହୋଇ ଉଠିଥିଲା ।

ନର୍ସିଂହୋମ୍‌ର ଅନେକ ରେକର୍ଡର ଫଟୋକପି ତା' ପାଖରେ ରଖିଥିବାର ଦେଖାଇଲା ମଂଜୁଳା ।

ନର୍ସିଂହୋମ୍‌ର ଅନ୍ୟାନ୍ୟ ଅପକର୍ମ ସହ ଏହି କନ୍ୟା ଶିଶୁମାନଙ୍କର ହତ୍ୟା କିଭଳି କରାଯାଉଥିଲା, ତାହା ନିଜ ଅକ୍ଷରରେ ଲେଖି ଦେଇଥିଲା ନିବେଦିତା । କ୍ଷୁଦ୍ର ଉଚ୍ଚ ଶକ୍ତିସଂପନ୍ନ ଟେପ୍ ରେକର୍ଡରରେ ତାକୁ ପଚାରି ପଚାରି ସମସ୍ତ ବିଷୟ ରେକର୍ଡିଂ କରିନେଲା ମଂଜୁଳା ।

ପାପର ବୟାନ ଏତେ ସହଜରେ ଦେଇଦେଲା ନିବେଦିତା । ସେତେବେଳେ ନରେନ୍ଦ୍ରଙ୍କ ସମ୍ମାନ ଯେ ଭୂଲୁଣ୍ଠିତ । ଜୀବନ ଯେ ବିପନ୍ନ ହୋଇଯାଉଛି । ତା' କ'ଣ ଥରଟିଏ ଭାବି ପାରିଲା ନାହିଁ ? ସେତେବେଳେ ସମସ୍ତ ବୁଦ୍ଧି, ବିଚାର ତା'ର ଲୋପ ପାଇଥିଲା ।

ବହୁ ଶିଶୁକନ୍ୟାଙ୍କ ହତ୍ୟାକାରିଣୀ ଇଚ୍ଛା କରିଥିଲେ ମଂଜୁଳାକୁ ହତ୍ୟା କରି ପାରିଥାଆନ୍ତା । ସାମାନ୍ୟ ଟିକିଏ ସାହସ, ଟିକିଏ ବୁଦ୍ଧି ଖଟାଇଥିଲେ ଏହି ପତଳା ଛୋଟ ଝିଅଟିକୁ ଜୀବନରେ ମାରି ଦେବାଟା କ'ଣ ଏତେ କଷ୍ଟକର ହୋଇଥାଆନ୍ତା ?

ଦିନକ ପରେ - ଆସିଲା ସେଇ ମୁହୂର୍ତ୍ତ । ସେତେବେଳକୁ ସେଇ ଯୁବକଙ୍କ ଠାରୁ ମୋଟା ଅଙ୍କର ଅର୍ଥ ଆଦାୟର ଚୁକ୍ତି ହୋଇସାରିଥିଲା ।

ନିବେଦିତାକୁ ମଂଜୁଳା ନିର୍ଦ୍ଦେଶ ଦେଇଥିଲା, 'ସିଜରାଇନ୍ କରାଯିବା ପରେ କନ୍ୟା ଶିଶୁଟିଏ ଯଦି ଜନ୍ମନିଏ, ତାକୁ ତୁମେ ସୁସ୍ଥ ଜୀବିତ ଅବସ୍ଥାରେ ମୋ ହାତରେ ଅର୍ପଣ କରିବ । ମୋର ବହୁ ଅନୁଚର ତୁମ ଆପାର୍ଟମେଣ୍ଟ ପାଖରେ ଜଗି ରହିଛନ୍ତି । ସେହି ନର୍ସିଂହୋମ୍ ମଧ୍ୟରେ ରୋଗୀ, ରୋଗୀଙ୍କର ଆଟେନ୍‌ଡାଣ୍ଟ ଏବଂ ଷ୍ଟାଫ୍‌ଙ୍କ ମଧ୍ୟରେ ସେମାନେ ତୁମକୁ ଘେରି ରହିଛନ୍ତି । ତୁମର ଅପକାର୍ଯ୍ୟ କାହାକୁ ମୁଁ ଜଣାଇ ନାହିଁ । ତୁମ ଡାକ୍ତରଙ୍କୁ କହିରଖ, ଏ ପିଲାଟି ଭଲରେ ଭଲରେ ଜନ୍ମ ନେବା ଏକାନ୍ତ ଆବଶ୍ୟକ । ମୁଁ ଓ.ଟି.ରେ ନିଶ୍ଚିତ ରହିବି । ଏବଂ ସମସ୍ତ ଯତ୍ନ ନେଇସାରି ତୁମେ ପିଲାଟିକୁ ମୋ ହାତକୁ ବଢ଼ାଇ ଦେବ । ସେମାନଙ୍କୁ ଅର୍ଥାତ୍ ଶିଶୁଟିର ମା', ବାପାଙ୍କୁ ମୁଁ କିଛି ଜଣାଇ ନାହିଁ । ତେଣୁ ସେ ଚୁକ୍ତିର ଅର୍ଥ ସେମାନଙ୍କ ଠାରୁ ତୁମେ ନେଇ ପାର ।'

ପରଦିନ ଖୁବ୍ ସକାଳୁ ନରେନ୍ଦ୍ର ଟେଲିଫୋନ୍ ପାଇଲେ, 'ଡାକ୍ତର, ଏ ମଧ୍ୟରେ ନିବେଦିତା ଠାରୁ ସବୁ ଶୁଣି ସାରିଥିବ । ମୋର ଅନୁଚର ତୁମ ପାଖେ ପାଖେ ଜଗିଛନ୍ତି । ମୁଁ ଶୁଣିଲି, ତୁମ ନର୍ସିଂହୋମ୍‌ରେ ଆଜି ଦୁଇଟି ସିଜରାଇନ୍ ହେବ ।

ଯଦି ସେମାନେ ପୁତ୍ର ଶିଶୁ ରୂପେ ଜନ୍ମ ନିଅନ୍ତି, ମୋର କିଛି କହିବାର ନାହିଁ, ମାତ୍ର ମୋର ଆବଶ୍ୟକ ଜୀବିତ ଶିଶୁକନ୍ୟା ।'

'ନିବେଦିତା ମୋତେ ଆପଣଙ୍କ କଥା କହିଛି । କିନ୍ତୁ ଆପଣ ଆମ ସଂପର୍କରେ ଭୁଲ ତଥ୍ୟ ପାଇଛନ୍ତି, ମିସ୍ ଶର୍ମା ।'

'ମୋତେ ଭୁଲାଇବାକୁ ଚେଷ୍ଟା କର ନାହିଁ । ମୋ କାମ ମୁଁ କରିବି । ସମସ୍ତ କାଗଜପତ୍ର ଓ ପ୍ରମାଣ ମୁଁ ଯଥାସ୍ଥାନରେ ପହଞ୍ଚାଇବାର ବ୍ୟବସ୍ଥା କରିସାରିଛି । ଏପରିକି ମୋ ଜୀବନ ଚାଲିଗଲେ ମଧ୍ୟ ତୁମେ ଦୁହେଁ ଯେପରି ଫାଶୀ ଖୁଣ୍ଟରେ ଝୁଲି ପାରିବ ସେ ବ୍ୟବସ୍ଥା ହୋଇଯାଇଛି । ମାତ୍ର ମୁଁ ତା' କରିବି ନାହିଁ । ମୋ ଚାହୁଁଥିବା ଭଳି କାମ କଲେ ତୁମେ ଦୁହେଁ ଏ ପୃଥିବୀରେ ଭଲ ମଣିଷ ହୋଇ ବଞ୍ଚି ପାରିବ ।'

ନରେନ୍ଦ୍ର ନିଜକୁ ଚାହିଁ ଆଶ୍ଚର୍ଯ୍ୟ ହେଲେ । ସେ ଯେ ଭୟରେ ଥରୁଛନ୍ତି । ତଥାପି ସେ ବିଶ୍ୱାସ କଲେ, ମଞ୍ଜୁଳା ହୁଏତ ତାଙ୍କୁ ବଂଚିବାକୁ ଦେବ ନାହିଁ । ସେ ସେମାନଙ୍କର ଶୁଭେଚ୍ଛୁ, ଏ କଥା କିଏ ବିଶ୍ୱାସ କରିବ ? ସେଇ ମୁହୂର୍ତ୍ତରେ ମୃତ୍ୟୁ ଭୟରେ ହେଉ ଅବା ତାଙ୍କ ମନରେ କେଉଁ କଣରେ ଥିବା ଟିକିଏ ସତ୍‌ଚେତନାର କ୍ଷୀଣ ଆଲୋକଟି ତାଙ୍କୁ ଅନ୍ୟ ଜଣେ କରିଦେଲା । ସେ ଯେପରି ଶପଥ ନେଲେ, ନା ଆଉ ନୁହେଁ । ଯାହା ହୋଇଗଲା ସେତିକି । ଏବେ ସବୁ ଠିକ୍ ଚାଲିବ ।

ସକାଳ ସାଢ଼େ ଆଠଟାରେ ଘରୁ ବାହାରି ନିଜ ଗାଡିରେ ନର୍ସିଂହୋମ୍ ଆସିବା ସମୟରେ ତାଙ୍କର ମନେହେଲା, ଅନ୍ୟ କେତୋଟି ଗାଡି ଯେପରି ତାଙ୍କ ଗାଡିକୁ ଅନୁଧାବନ କରୁଛନ୍ତି ।

ଛାଇକୁ ଦେଖି ଡରିଯିବା ଭଳି ସେ ରାସ୍ତାର ପ୍ରତିଟି ଲୋକଙ୍କୁ ଭୟ କରୁଥିଲେ । ଡ୍ରାଇଭର ଯଦି ଗାଡି ଚଳାଉ ନ ଥାନ୍ତା ନିଶ୍ଚିତ ଭାବରେ ଦୁର୍ଘଟଣାରେ ତାଙ୍କର ମୃତ୍ୟୁ ହୋଇଯାଇଥାଆନ୍ତା ସେଦିନ ।

ଆରେ ଏମାନେ କିଏ ? ନର୍ସିଂହୋମ୍ କ୍ୟାବିନ୍‌ରେ ଥିବା ଅଳ୍ପ କେତେଜଣ ରୋଗୀଙ୍କର ଏତେ ବେଶୀ ଆଟେନ୍‌ଡାଣ୍ଟ୍ । କାହାକୁ ଏକଥା ପଚାରିପାରୁ ନ ଥିଲେ ଡାକ୍ତର ।

ଏମାନେ ସମସ୍ତେ କ'ଣ ତେବେ ଏ ବିଷୟ ଜାଣି ପାରିଛନ୍ତି ? ଡାକ୍ତର, ସିଷ୍ଟର, ବେହେରା, ସମସ୍ତେ ନରେନ୍ଦ୍ରଙ୍କୁ ଏତେ ଚାହୁଁଛନ୍ତି କାହିଁକି ?

ନରେନ୍ଦ୍ର ବିଚଳିତ ହେଲେ ମଧ୍ୟ କର୍ତ୍ତବ୍ୟରେ ଅବହେଳା କରିନଥିଲେ । ଗୋଲାପ କଢ଼ି ଭଳି ଅତି ସୁନ୍ଦର କୋମଳ ଶିଶୁକନ୍ୟାଟିକୁ ଧଳା ପୋଷାକ ପରିହିତା ମଂଜୁଳା ଶର୍ମାଙ୍କ ହାତକୁ ବଢ଼ାଇ ଦେଇଥିଲେ ।

ଫାଟକ ବାହାରେ ଅପେକ୍ଷାକରିଥିବା କାରଟିରେ ବସି ମଂଜୁଳା ଖୁବ୍ ଶୀଘ୍ର ସେ ସ୍ଥାନ ତ୍ୟାଗ କରିଥିଲା । ଏବଂ ଡାକ୍ତର ନରେନ୍ଦ୍ର ସାମନ୍ତ ଆବଶ୍ୟକୀୟ ଅର୍ଥ ଯାହାକି ସେ ନର୍ସିଂହୋମ୍ ପାଇଁ ନେବା କଥା, ତାହା ଗ୍ରହଣ କରି ବାକି ଅର୍ଥ ସେ ଯୁବକଙ୍କୁ ଫେରାଇ ଦେଇଥିଲେ । ବୃଦ୍ଧା ଜଣଙ୍କ କହୁଥିଲେ, 'ଟଙ୍କା ଯଦି ସେ ନେବାକୁ ଚାହୁଁ ନାହାଁନ୍ତି, ଥାଉ, ଡାକ୍ତରଙ୍କୁ ବାଧ କରିବା ନାହିଁ ।'

କ୍ୟାବିନ୍‌ରେ ଶୋଇ ରହିଥିବା ପ୍ରସୂତିଟିର ଏ ପର୍ଯ୍ୟନ୍ତ ଚୈତନ୍ୟ ଫେରିନଥିଲା ।

ଅନ୍ୟ ଜଣଙ୍କ ପାଇଁ ଫୋନ୍ କରି ଜଣେ ବିଶେଷଜ୍ଞ ଡାକ୍ତରଙ୍କୁ ଡକାଇ ଦେଇଥିଲେ ନରେନ୍ଦ୍ର । ଏସବୁ ପରେ ଖୁବ୍ ଶୀଘ୍ର ସେ ଫେରିଯାଇଥିଲେ ଘରକୁ ।

ନିବେଦିତା ଖୁବ୍ ଭୟ କରିଥିଲା । ମଂଜୁଳା ଶର୍ମା ତା'ଠାରୁ ନେଇଥିବା ସମସ୍ତ ପ୍ରମାଣ ପରେ ସେ ଆଦୌ ବିଶ୍ୱାସ କରୁନଥିଲା ତାକୁ । ତା' ବେକ ପାଖରେ ଖଣ୍ଡାଟିଏ ସତେକି ଝୁଲି ରହିଥିଲା ।

ନରେନ୍ଦ୍ରଙ୍କର ଦାୟିତ୍ୱ ଥିଲା, ସେହି ଶିଶୁକନ୍ୟାମାନଙ୍କୁ ବାହାରର ଆଲୋକ ଦେଖାଇବା ଏବଂ ନିବେଦିତା ଜାଣିଥିଲା କେତେ ସହଜରେ ସେମାନଙ୍କୁ ଶେଷ କରିହେବ । ଏ କାର୍ଯ୍ୟ ଶେଷ ହେବାକୁ ଗୋଟାଏ ମିନିଟ୍ ବି ଲାଗୁ ନ ଥିଲା ନିବେଦିତାକୁ । ନରେନ୍ଦ୍ରଙ୍କର ସମର୍ଥନ ଥିଲା ସତ । କିନ୍ତୁ କେବେ ସେ ମୃତ ଶିଶୁଙ୍କୁ ଦେଖିବା ପାଇଁ ଇଚ୍ଛା କରିନାହାଁନ୍ତି । ନିବେଦିତା ହାତରୁ ମୋଟା ଅଙ୍କର ଅର୍ଥ ହିଁ ଯଥେଷ୍ଟ ଥିଲା ତାଙ୍କ ପାଇଁ ।

ନିବେଦିତା ତା'ର ଇସ୍ତଫାପତ୍ର ତାଙ୍କ ପାଖକୁ ପଠାଇ ଦେଇଥିଲା । ମଂଜୁଳା ଶର୍ମା ତାକୁ କ'ଣ କହିଥିଲା ? ଫୋନ୍‌ରେ କିଛି ଧମକ୍ ଦେଇଥିଲା ବୋଧହୁଏ ? ଏସବୁ ଜାଣିପାରିଲେ ନାହିଁ ନରେନ୍ଦ୍ର । କିଏ ଜାଣେ, ନିବେଦିତା ଭୟରେ ଆତ୍ମହତ୍ୟା କଲା କିମ୍ବା ନିଜ ଜୀବନକୁ ସୁଧାରି ନେବାକୁ, ଅତୀତର ପାପ ସ୍ଖଳନ ନିମନ୍ତେ କେଉଁ ଆଧ୍ୟାତ୍ମିକ ମାର୍ଗରେ ପଥଚାରୀ ହେଲା, ଏ ସଂପର୍କରେ ସେ କିଛି ଜାଣି ପାରିଲେ ନାହିଁ ।

ମଂଜୁଳା ତାଙ୍କୁ ଦୁଇଥର ଫୋନ୍ କରି କହିଥିଲା, 'ଡାକ୍ତର, ତୁମେ ପାପୀ, ଏକଥା ଭୁଲିଯିବ ନାହିଁ । ରକ୍ଷାକର୍ତ୍ତା ଯଦି ଘାତକ ହୁଏ, ତା'ର ପରିଣାମ ଭଲ ହୁଏ ନାହିଁ । ସାବଧାନ ରହିବ ।'

ନରେନ୍ଦ୍ର ପାରିଲେ ନାହିଁ । ବଞ୍ଚିବା ମଧ୍ୟ କଷ୍ଟକର ହେଲା ତାଙ୍କ ପାଇଁ । ସବୁବେଳେ ଆଶଙ୍କା, ମୃତ୍ୟୁର ଆତଙ୍କ, ସତେକି ମୃତ୍ୟୁର କଳାଛାଇ ତାଙ୍କୁ ଅନୁସରଣ କରୁଥିଲା । ଅବଶ୍ୟ ସେହି ସମୟରେ ମରିବା ପାଇଁ ତାଙ୍କର ଭୟ ନ ଥିଲା ।

ଏ ଅସମ୍ମାନ କ'ଣ କେବେ ଲିଭି ଯାଇ ପାରେ ତାଙ୍କ ଲଲାଟରୁ ? ନରେନ୍ଦ୍ର ରାସ୍ତା ଖୋଜି ପାଉ ନ ଥିଲେ । ଏହି ଚିନ୍ତା ତାଙ୍କୁ ଅଧା ପ୍ରାଣ କରିଥିଲା ।

ପିଲାମାନେ ତାଙ୍କଠାରୁ ଦୂରରେ ଥିବାରୁ ସେ ଏକ ପ୍ରକାର ନିଶ୍ଚିନ୍ତ ଥିଲେ । ଯେଉଁ ଅଭ୍ୟାସ ପୂର୍ବରୁ ଥିଲା, ମଦ୍ୟପାନ, ଡ୍ରଗ୍‌ସ ନେବା, ତା'ର ପରିମାଣ ଖୁବ୍ ବଢ଼ିଯାଇଥିଲା । ସେ ଦିନକୁ ଦିନ ଅସୁସ୍ଥ, ଅର୍ଥହୀନ ହୋଇ ପଡୁଥିଲେ ।

ସହରର କେଉଁ ଅଖ୍ୟାତ ଅନାମଧେୟ ସଂକୀର୍ଣ୍ଣ ପରିତ୍ୟକ୍ତ ଗଳିରେ କ୍ଷୁଦ୍ର ପୁରୁଣା ଘର ଖଣ୍ଡିଏ ନେଇ ସେ ରହୁଥିଲେ । ଅସୁସ୍ଥ ସ୍ତ୍ରୀ ନନ୍ଦିତାକୁ ନେଇ ସେ ଅତିଷ୍ଠ ହୋଇ ଉଠିଥିଲେ ସେତେବେଳେ । ତାଙ୍କ ରାଜପ୍ରାସାଦ ଭଳି ଘରଟି ଅତି ଅଳ୍ପ ଅର୍ଥରେ ଯଥାଶୀଘ୍ର ବିକ୍ରି କରି ଦେବାରେ ଆଦୌ ଦ୍ୱିଧାଗ୍ରସ୍ତ ହୋଇ ନ ଥିଲେ ।

ନର୍ସିଂହୋମ୍‌ର ଦାୟିତ୍ୱ ନେଇଥିବା ବନ୍ଧୁ ଡାକ୍ତରଙ୍କ ପାଖକୁ ଯାଇ ପ୍ରାପ୍ୟ ଅର୍ଥ ମାଗିବା ଭଳି ମୁହଁ ସେ ହରାଇଥିଲେ ।

ନନ୍ଦିତା ଯିବାପରେ ତାଙ୍କର ସମସ୍ତ ମନୋବଳ ଭାଙ୍ଗିଯାଇଥିଲା । ପାଗଳ ଭଳି ବେଶ୍ ବୁଲିଲେ କେତେଦିନ । ନିଜକୁ ନିଶାରେ ବୁଡାଇ ଅସୁସ୍ଥ କରି ପକାଇଲେ । ସମୟକୁ ସେ ହାତ ଛଡା କଲେ ।

କେଜାଣି କେତେଦିନ, କେତେବର୍ଷ ପରେ ଅତୀତର ସେ ଜ୍ୱାଳା ଉପଶମ ହେଲା । ଖବର ନେଇ ବୁଝିଲେ ସୁସ୍ଥରେ ଅଛନ୍ତି ପୁଅ ଦୁହେଁ । କ'ଣ ମନେହେଲା ନରେନ୍ଦ୍ରଙ୍କର ସେ ଭାବିଲେ ଏବେ ବି ସେ ବଞ୍ଚିଛନ୍ତି । ତାଙ୍କର ଏମ୍.ବି.ବି.ଏସ୍ ପାଶ୍ କରିଥିବା ସାର୍ଟିଫିକେଟ୍ ଖଣ୍ଡିକ ପାଖରେ ରହିଛି । ଏ ଜ୍ଞାନ କେହି ନେଇ ଯିବେ ନାହିଁ ତାଙ୍କ ପାଖରୁ ।

ଖାଇପିଇ ବଞ୍ଚିଯିବା ପାଇଁ ଘରୋଇ କ୍ଲିନିକ୍‌ଟିରେ ଜଣେ ଡାକ୍ତରଙ୍କ ପାଖରେ ସହାୟକ ଡାକ୍ତର ଚାକିରିଟି ବାଛିନେଇଛନ୍ତି ନରେନ୍ଦ୍ର । ଏ ଜୀବନ ସାଧାରଣ, ଅଥଚ ସାବଲୀଳ । କେବେ କେବେ ବିଷାକ୍ତ ଅତୀତର ଜ୍ୱାଳାକୁ ବାଦ୍‌ଦେଲେ ତାଙ୍କର ଆଉ କିଛି ଅସୁବିଧା ହୁଏ ନାହିଁ ।

ରାତି ତଥାପି ଶେଷ ହୋଇନାହିଁ । ଟ୍ରେନ୍‌ଟି ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ପହଞ୍ଚିଯାଇଛି । ଅନେକ ସମୟ କାନ୍ଦି ସାରିବା ପରେ ମନର ଅବସ୍ଥା ଯେପରି ଶାନ୍ତ, ସ୍ଥିର ହୋଇଯାଏ, ସେଇଭଳି ସତେଜତା ଅନୁଭବ କରୁଥିଲେ ଡାକ୍ତର ନରେନ୍ଦ୍ର ସାମନ୍ତ ।

ପ୍ରଭାତଙ୍କ ଡ୍ରାଇଭର ତାଙ୍କୁ ଅପେକ୍ଷା କରିଥିଲା । ଡାକ୍ତର ନରେନ୍ଦ୍ର ସାମନ୍ତ ଧୀରେ ଆଗେଇଗଲେ ଲୋକଟି ସହ । ଡ୍ରାଇଭରଟି ନମ୍ର ଭାବରେ କହିଲା, 'ସାର୍, ବ୍ୟାଗ୍‌ଟା ମୋ ହାତକୁ ଦିଅନ୍ତୁ । ସାବ୍‌ଙ୍କ ଫାର୍ମ ହାଉସ୍ ଏଠାରୁ ଖୁବ୍ ଦୂର ନୁହଁ । ଆମେ ଶୀଘ୍ର ପହଞ୍ଚିଯିବା ।'

'ଠିକ୍ ଅଛି । ଚାଲ ।'

ରାତି ପକ୍ଷୀର ସ୍ୱର, ଜଙ୍ଗଲ ରାସ୍ତାର ନିର୍ଜ୍ଜନତା, ନରେନ୍ଦ୍ର ସାମନ୍ତଙ୍କୁ ଛୁଇଁ ପାରୁନଥିଲା । ନିରବରେ ବସି ରହି ସେ ଅପେକ୍ଷା କରିଥିଲେ ପ୍ରଭାତଙ୍କୁ ଭେଟିବାକୁ ।

ପ୍ରଭାତ ଦୁଇରାତି ଭଲରେ ଶୋଇ ପାରି ନ ଥିଲେ । ସେଇ ପଛଦିନ ସବୁ ସତେକି ଜୀବନ୍ତ ହୋଇ ଉଠିଛନ୍ତି । ସେମାନେ ତାଙ୍କୁ ଭୀରୁ, କାପୁରୁଷ ନାମରେ ଅଭିହିତ କରୁଥିଲେ । ଫାଶୀ ଆସାମୀର କାଠଗଡାରେ ଠିଆହୋଇ ଅନେକ ଦିନରୁ ନିଜ ବିଚାର ନିଜେ ଶେଷ କରିଛନ୍ତି ସେ । ତଥାପି ଶ୍ୱେତପଦ୍ମାର ଉଦାସ ମୁହଁ ତାଙ୍କୁ ଅସ୍ଥିର କରେ । ବିଚାରୀ ଏପର୍ଯ୍ୟନ୍ତ ଜାଣିନାହିଁ ଏହି ଷଡଯନ୍ତ୍ରରେ ତା'ର ଦେବୋପମ ସ୍ୱାମୀ ଯେ ମୁଖ୍ୟ ଆସାମୀ ।

ଅଲଟ୍ରାସାଉଣ୍ଡ୍ କରିବା ଦିନ ନିଜେ ପ୍ରଭାତ ତାଙ୍କ ମା'ଙ୍କର ଆଦେଶରେ ଡାକ୍ତରଙ୍କୁ ଅନୁରୋଧ କରିଥିଲେ, ସେଇଦିନ ଶ୍ୱେତପଦ୍ମାର ଗର୍ଭରେ ଥିବା କନ୍ୟା ସନ୍ତାନର ଭ୍ରୁଣଟି ନଷ୍ଟ କରିଦେବାକୁ । ସମ୍ଭବତଃ ଏତିକି ପର୍ଯ୍ୟନ୍ତ ବକ୍ତବ୍ୟ ଶ୍ୱେତପଦ୍ମା ଶୁଣିପାରିଥିଲା । ସେଦିନ ଦୁଃଖରେ ବିଦୀର୍ଣ୍ଣ ତା'ର ଶୁଷ୍କ, ବିରସ ମୁଖଟି ଏଯାଏ ଭୁଲି ପାରୁନାହାଁନ୍ତି ପ୍ରଭାତ । ଶ୍ୱେତପଦ୍ମା ତା' ସ୍ୱାମୀଙ୍କର ଅସଲ ପରିଚୟଟି ଜାଣିପାରିଥିଲେ ସେମାନଙ୍କ ବିବାହିତ ଜୀବନର ସମସ୍ତ ସୁଖ, ଶାନ୍ତି ସେଇ ମୁହୂର୍ତ୍ତକରେ ଧ୍ୱଂସ ପାଇ ଯାଇଥାଆନ୍ତା ।

ଏ ଖବର ଜାଣିଲେ ନର୍ସିଂହୋମ୍‌ର ଷ୍ଟାଫ୍ ଏବଂ ଚେତା ଫେରିବା ପରେ ନିଜେ ଶ୍ୱେତପଦ୍ମା । ଅଥଚ ପ୍ରକୃତ ସତ୍ୟ ଜାଣିଥିଲେ ନିଜେ ଡାକ୍ତର, ତାଙ୍କ ସହାୟିକା ନିବେଦିତା, ପ୍ରଭାତ ଓ ତାଙ୍କର ମା' ।

ଏଇ କେତେ ଦିନ ହେବ ପ୍ରଭାତ ଅନୁଭବ କରୁଛନ୍ତି, ଶ୍ୱେତପଦ୍ମା ଯେପରି କୌଣସି ଚିନ୍ତାରେ ବିବ୍ରତ ହୋଇଉଠିଛି । ଠାକୁରଘରେ ବସି ରହୁଛି ଅନେକ ସମୟ । ସଂସାରର ମାୟା, ମୋହରୁ ମୁକ୍ତ ସନ୍ନ୍ୟାସିନୀଟି ଭଳି ମନେ ହେଉଛି ସେ । ଥରି ଉଠିଛନ୍ତି ପ୍ରଭାତ ।

କାହିଁ କେବେ ତାକୁ ମନ ଖୋଲି ହସିବାର ଦେଖି ନାହାନ୍ତି ତ ସେ ? ଏଠାକୁ ଆସିବାଦିନ ଖୁବ୍ ବର୍ଷା । ସକାଳେ ପ୍ରଭାତ ଶୀଘ୍ର ପ୍ରସ୍ତୁତ ହୋଇ ଶ୍ୱେତପଦ୍ମାକୁ ନିଦରୁ ଉଠାଇଲେ । ହଠାତ୍ ଉଠି କିଛି ବୁଝି ନ ପାରି ସେ ପ୍ରଭାତକୁ ଚାହିଁ ରହିଲା ।

'ଦୁଇ ଦିନ ପାଇଁ ମୁଁ ବାହାରକୁ ଯାଉଛି, ଶ୍ୱେତା । ତୁମେ ଯଦି ବାହାରି ପାରିବ ? ଅବଶ୍ୟ ମୋର ଅନେକ କାମ ।'

'ନା – ଥାଉ । ପରେ କେବେ.... ।'

'ଆସେ, ପରେ କଥା ହେବା ।' ଅଧିକ କିଛି ନ କହି ବାହରକୁ ଚାଲିଯାଇଥିଲେ ପ୍ରଭାତ । ସାଙ୍ଗରେ ନେବାପାଇଁ ଆବଶ୍ୟକୀୟ ପୋଷାକ, ଅନ୍ୟାନ୍ୟ ଯାହା, ସକାଳେ ସେ ସଜାଡି ରଖିଲେ । ଏକା ଏକା ଦୁଇଦିନ । ଖୁବ୍ ବେଶୀ ଦିନ ରହିବାର ନାହିଁ । କାମ ବି କିଛି କରିବାର ନାହିଁ । ପଳାୟନପନ୍ଥୀ ମନ ନେଇ ଧାଇଁ ଯାଉଛନ୍ତି ସେ ଦୈନନ୍ଦିନ ବଞ୍ଚିବାର ରୁଦ୍ଧ କାରାଗାରରୁ ।

ବାହାର ଫାଟକ ଖୋଲିବାର ଶବ୍ଦ ଶୁଣିଲେ ପ୍ରଭାତ । ଗାଡିର ଲାଇଟ୍ ପଡୁଛି ବାହାର ବାଲକୋନି, ପରେ ପାଖ କବାଟରେ । ଆକାଶରୁ ଅନ୍ଧାର ପୋଛି ହେଇ ଆସୁଛି । ଡାକ୍ତର ନରେନ୍ଦ୍ର ସାମନ୍ତ ହଠାତ୍ କାହିଁକି ? ଟଙ୍କା ଦରକାର ? ଖୁବ୍ ନେଇଛି । ଏବେ କ'ଣ ଆବଶ୍ୟକ ?

ଡ୍ରାଇଭର ତାଙ୍କୁ ଭିତରକୁ ନେଇ ଆସିଲା । ପ୍ରଭାତ ବିଶ୍ରାମନେଇଥିବା ଚେୟାର୍‌ରୁ ଉଠି ପଡିଲେ । ଭୂତ ଦେଖିବା ଭଳି ଚମକି ପଡିଲେ ସେ ।

'ଆପଣ ମୋତେ ଚିହ୍ନି ପାରୁ ନାହାଁନ୍ତି ? ମୁଁ ଡକ୍ଟର ନରେନ୍ଦ୍ର ସାମନ୍ତ । ସେଦିନ ଆପଣ ଆପଣଙ୍କ ମା'ଙ୍କୁ ନେଇ ମୋ ନର୍ସିଂ ହୋମ୍‌କୁ ଆସିଥିଲେ... ।'

'ବସନ୍ତୁ, ଡାକ୍ତର । ଆମର ଫୋନ୍‌ରେ କଥାବାର୍ତ୍ତା ହୋଇଛି । ଏବଂ

ଆପଣଙ୍କୁ ଆଣିବା ପାଇଁ ମୋ ଡ୍ରାଇଭର ଗାଡି ନେଇ ଯାଇଥିଲା । ଚିହ୍ନିବାରେ କ'ଣ ବାକି ଅଛି କହନ୍ତୁ ତ ? ବସନ୍ତୁ । ଏ ଚେହେରା କ'ଣ ହୋଇଛି ଆପଣଙ୍କର ? ଏଇ ଚା' ଆସିଗଲା । ନିଅନ୍ତୁ । ଚା'ଟା ପିଇ ଘଣ୍ଟାଏ ଖଣ୍ଡେ ବିଶ୍ରାମ ନିଅନ୍ତୁ । ଏ ଲୋକ ଆପଣଙ୍କୁ 'ଅତିଥି କକ୍ଷ'କୁ ନେଇଯିବ ।'

'ଶୁଣନ୍ତୁ ପ୍ରଭାତ ବାବୁ, ପଚାରିଲେ ନାହିଁ ତ ମୁଁ କାହିଁକି ଆସିଛି ?'

'ମୁଁ ଖୁବ୍ କ୍ଳାନ୍ତ, ଡକ୍ଟର ସାମନ୍ତ । ସକାଳେ କଥାବାର୍ତ୍ତା ହେବା ।'

'ନା - ଆପଣ, ମୁଁ କେହି କ୍ଳାନ୍ତ ହୋଇନାହୁଁ ।'

'ମାନେ କ'ଣ କହୁଛନ୍ତି ଆପଣ ?' ପ୍ରଭାତ ତାଙ୍କୁ ବିରକ୍ତିରେ ଚାହିଁଲେ ।

'ଆପଣ ମୋ କଥା ଶୁଣିବାକୁ ଚାହୁଁ ନାହାନ୍ତି ? ଅଥଚ ଆପଣଙ୍କୁ ଖୋଜି ଖୋଜି ମୁଁ ଧାଇଁ ଆସିଛି ଏ ଜଙ୍ଗଲ୍ ଭିତରକୁ ଏତେଦୂର । ମୋ ରୁମ୍‌ଟା କାହିଁ, ବାବୁ ? ମୁଁ ଟିକିଏ ମୁହଁଟା ଧୋଇ ଆସିବି ।'

ପାଖରେ ଅନ୍ୟ କେହି ନଥିଲେ । ଚା' ଦେବା ଲୋକଟି ଚା' ରଖି ଚାଲିଯାଇଥିଲା ଅନେକ ବେଳୁ । ଡ୍ରାଇଭର୍ ବି । ନିଜେ ପ୍ରଭାତ ନରେନ୍ଦ୍ରଙ୍କୁ ତାଙ୍କ କୋଠରୀ ଦେଖାଇ ଦେଲେ । ଦାଣ୍ଡ ପାଖ କବାଟ ବନ୍ଦକରି ବୈଠକ ଘର ସୋଫାରେ ଅଧାଶୁଖା ଅବସ୍ଥାରେ ବସି ରହିଲେ ଡାକ୍ତରଙ୍କୁ ଅପେକ୍ଷାକରି ।

ସାରା ଜୀବନ ସୁଖୀ ହେବାର ଅଭିନୟ କରି ଥକି ଯାଇଥିବା ଲୋକଟି ଏବେ ଦୁଃଖରେ ଭାଙ୍ଗି ପଡୁଛି କାହିଁକି ? କାହିଁକି ସେ ଶ୍ୱେତପଦ୍ମାଙ୍କୁ ମୁହଁ ଦେଖାଇବାର କ୍ଷମତା ହରେଇ ଦେଉଛନ୍ତି ? ନା - ଏବେ ନିଜେ ସେ ଏଇ ଡାକ୍ତରଙ୍କୁ ନେଇ ଯିବେ । କହିବେ, 'ଶ୍ୱେତା, ପ୍ରମାଣ ଚାହୁଁଚ ତ ନିଜେ ସାକ୍ଷୀ ପ୍ରମାଣ ସାଙ୍ଗରେ ନେଇ ଆସିଛି । ମୋତେ ଆଦୌ କ୍ଷମା କରିବ ନାହିଁ । ମୁଁ ନୃଶଂସ, ପାପୀ, ତୁମ କନ୍ୟାର ହତ୍ୟାକାରୀ । ମୋତେ ଶାସ୍ତି ଦିଅ ମନ ଇଚ୍ଛା । ମୁକ୍ତି ଦିଅ ତୁମ ଜୀବନରୁ । ଏ ଘର, ଧନ, ଐଶ୍ୱର୍ଯ୍ୟ ସବୁ ତୁମର । ମୁଁ ଆଉ ପାରିବି ନାହିଁ । ତୁମକୁ ସୁଖ ଶାନ୍ତି ଦେବାକୁ ଯାଇ ମୁଁ ହାରିଯାଇଛି । ମୁଁ କ'ଣ କରିବି ନିଜେ ବୁଝି ପାରୁନାହିଁ । ମୃତ୍ୟୁ ହିଁ ଏକମାତ୍ର ପନ୍ଥା ମୋ ପାଇଁ । ମାତ୍ର ଏ ଜୀବନର ଅସାରତା, ଏ ମାୟା, ମୋହରୁ ମୋର ମୁକ୍ତି କାହିଁ ?'

'ଓଃ ଆପଣ ଏଠି ? ମୁଁ ଭାବିଲି ଶୋଇ ଯାଇଛନ୍ତି ।' ଡାକ୍ତର ନରେନ୍ଦ୍ରଙ୍କ ସ୍ୱର ପ୍ରଭାତଙ୍କୁ ପ୍ରକୃତିସ୍ଥ କଲା ।

'କହନ୍ତୁ ତ ଡାକ୍ତର ? ସେଦିନ ମୁଁ ଏମିତି ନୃଶଂସ ନିଷ୍ପତ୍ତି ନେଇ ପାରିଲି କିପରି ?'

'କ'ଣ ହେଲା ଆପଣଙ୍କର, ପ୍ରଭାତବାବୁ ? ପ୍ଲିଜ୍ ଟିକିଏ ସ୍ଥିର ହୋଇ ବସନ୍ତୁ ତ । ସେହି ପାପରେ ମୁଁ ବି ଭାଗୀ । କିନ୍ତୁ ଆପଣ ହଠାତ୍ ଏତେଦିନ ପରେ ଏସବୁ କାହିଁକି କହୁଛନ୍ତି ?'

'ନା - ଏତେ ଦିନ ପରେ ନୁହଁ । ସେଦିନର ସେଇ କାଳବେଳା ଗତ ହେବାର ପରମୁହୂର୍ତ୍ତରୁ ମୁଁ ଅନୁତାପର ଦାବାନଳରେ ଜଳିଛି । ଖୁବ୍ ଚେଷ୍ଟାକରିଛି ମୋ ପତ୍ନୀ, ପୁତ୍ର ସହ ସୁଖରେ, ଶାନ୍ତିରେ ଜୀବନ ବିତାଇବାକୁ । ପାରିଲିନି । ଜାଣନ୍ତି, ଶ୍ୱେତାଙ୍କ ଓଠରୁ ହସ ଲିଭିଯାଇଛି ସେଇଦିନରୁ ।'

'ମୋ କଥା ପଚାରିଲେ ନାହିଁ ତ ? ବହୁତ ଭୋଗିଛି, ପ୍ରଭାତବାବୁ । ସେଇ ପାପର ପ୍ରାୟଶ୍ଚିତ କରିବାକୁ ଆସିଛି ଆପଣଙ୍କ ପାଖକୁ ।'

ପ୍ରଭାତ ଆଶ୍ଚର୍ଯ୍ୟ ଦୃଷ୍ଟିରେ ଚାହିଁ ରହିଲେ ଡାକ୍ତରଙ୍କୁ ।

'ଭାଇ, ସେ କଳଙ୍କିତ ଅତୀତ ଲିଭି ଯାଉ । ଆମେ ନୂଆ କରି ଗଢ଼ିବା ଆଜିର ପ୍ରତିଟି ମୁହୂର୍ତ୍ତକୁ ।'

'କ'ଣ ଏମିତି କହୁଚନ୍ତି, ଡାକ୍ତର ?' ପ୍ରଭାତ ବ୍ୟସ୍ତ ହୋଇ ପଚାରିଲେ ।

'ପ୍ରଭାତବାବୁ, ଆପଣଙ୍କର ସେଇ ଝିଅଟି ଏବେ ବି ବଂଚି ରହିଛି ।'

'ଡାକ୍ତର !!!' ପ୍ରଭାତଙ୍କ ଆଖିରୁ ଝରିଲା ଲୁହ । ଅତ୍ୟଧିକ ଉତ୍ତେଜନା ହେତୁ ତଣ୍ଟିରୁଦ୍ଧ ହେଲା । ସେ ଡାକ୍ତରଙ୍କର ହାତ ଚାପିଧରି କାନ୍ଦିବାରେ ଲାଗିଲେ ।

'ବସନ୍ତୁ । ସବୁକଥା କହୁଛି ।' ନରେନ୍ଦ୍ର କିଛି ସମୟ ମୁଣ୍ଡ ଝୁଙ୍କାଇ ବସି ରହିଲେ । ପରେ ପରେ ଚଳଚ୍ଚିତ୍ରର ଗଳ୍ପ ଭଳି କଥାଟି ଆରମ୍ଭ କରିଦେଲେ ।

ସେଇ ସକାଳେ ପ୍ରଭାତ ଡକ୍ଟର ନରେନ୍ଦ୍ର ସାମନ୍ତଙ୍କ ସହ ଭୁବନେଶ୍ୱର ବାହାରିଗଲେ । ବ୍ରେକ୍‌ଫାଷ୍ଟ ଆଧାଖିଆ ହୋଇ ଟେବୁଲରେ ପଡି ରହିଲା । ଚା' କପ୍ ଶେଷ ହୋଇ ପାରିଲା ନାହିଁ । ଏତେ ବେଶୀ ସୁଖର ସ୍ରୋତରେ ସେମାନଙ୍କ ମନର ଗ୍ଲାନି କିଛି ପୋଛି ହୋଇଯାଇଥିଲା । ରାସ୍ତାରେ କେହି କାହାକୁ ପଦଟିଏ କଥା ବି କହି ପାରୁ ନଥିଲେ । ଭୁବନେଶ୍ୱରର ଦୂରତ୍ୱ କିଛି କମ୍ ନୁହେଁ । ମନର ଉତ୍ତେଜନା ହେତୁ ସେ ଦୂରତ୍ୱ ପାଖ ମନେହେଉଥିଲେ ବି ରାସ୍ତା ଶେଷ ହେଉ ନ ଥିଲା ।

କ'ଣ କରୁଥିବ ଶ୍ୱେତପଦ୍ମା ? ବିଚାରୀ କିଭଳି ବିତାଇଛି ଏ ଦୀର୍ଘ ତେଇଶ, ଚବିଶ ବର୍ଷ !... କେତେ ଯେ ମାନସିକ ଯନ୍ତ୍ରଣା ଭୋଗିଛି । ଅବ୍ୟକ୍ତ କୋହ, ଅମାପ ଅଭିଯୋଗ ଛାତି ତଳେ ସାଇତି ରଖି ନିଷ୍ଠୁର ସ୍ୱାମୀ, ଶାଶୂଙ୍କୁ ସହିଛି ସେ । ଏ ପରିବାରର ସମସ୍ତ ଝଂଜାଳ ନିର୍ବିବାଦରେ ସଂଭାଳିଛି । କେବେହେଲେ ଅଭିଯୁକ୍ତ କରି ନାହିଁ ତାଙ୍କୁ । ପଚାରି ନାହିଁ କିଛି -

ତୁମେମାନେ ଏପରି ଦୁର୍ଦ୍ଦାନ୍ତ, ରାକ୍ଷସ ? ମା' ପେଟରୁ ଟାଣି ନେଇ ମୋ ଛୁଆଟାକୁ ମାରିଦେଲ !'

ପ୍ରଭାତ ଆଗକୁ ଝୁଙ୍କି ପଡିଲେ । ଡ୍ରାଇଭର ବ୍ରେକ୍ ଦେଇ ଗାଡି ଷ୍ଟାର୍ଟ ବନ୍ଦ କଲା । ରାସ୍ତାଟିକୁ ଚାଲି ଆସିଥିବା ସାନ ପିଲାଟିକୁ ତା' ମା' ଧାଇଁ ଆସି ନେଇଗଲା ।

'ପିଲାଟାର ଭାଗ୍ୟ,' ନରେନ୍ଦ୍ର ଦୀର୍ଘଶ୍ୱାସ ନେଇ କହିଲେ । ପ୍ରଭାତ ତାଙ୍କୁ ଚାହିଁଲେ, ଉତ୍ତର ଦେଲେ ନାହିଁ ।

ପୋର୍ଟିକୋରେ ଗାଡି ରହିବା ପରେ ଖୁବ୍ ଶୀଘ୍ର ଘର ଭିତରକୁ ଚାଲି ଯାଇଥିଲେ ପ୍ରଭାତ । ଡାକ୍ତର ନରେନ୍ଦ୍ର ସାମନ୍ତଙ୍କୁ କିଏ ନେଇ ଘରେ ବସାଇଲା କି ନାହିଁ ତା' ସେ ଚିନ୍ତା କରି ନ ଥିଲେ ।

ଶୋଇବା ଘରେ ବହି ଖଣ୍ଡିଏ ଧରି ସୋଫାରେ ବସି ରହିଥିଲା ଶ୍ୱେତା । ଘର ଭିତରକୁ ପଶି ଆସି ତାଙ୍କୁ ଅତ୍ୟନ୍ତ ଅସହାୟ ଦୃଷ୍ଟିରେ ଚାହିଁ ରହିଲେ ପ୍ରଭାତ ।

'କିଓ କେତେବେଳେ ଆସିଲ ? ଏମିତି କ'ଣ ଦିଶୁଚ ?'

'ଶ୍ୱେତା, ଶ୍ୱେତା ଡାର୍ଲିଂ, ମୋତେ କଠୋର ଶାସ୍ତି ଦିଅ । ମୋତେ ବିଦାୟ ଦିଅ ତୁମ ଜୀବନରୁ । ମୁଁ ଆଉ ବଂଚିବାକୁ ଚାହେଁ ନାହିଁ ।' ଦୁଇ ଆଣ୍ଠୁ ମାଡି ଶ୍ୱେତପଦ୍ମାର କୋଳରେ ମୁଣ୍ଡ ରଖି କାନ୍ଦିବାରେ ଲାଗିଲେ ପ୍ରଭାତ ।

'କ'ଣ ହୋଇଛି ତୁମର ? ଏମିତି କ'ଣ ପାଗଳାଙ୍କ ଭଳି ହଉଚ ?' ଶ୍ୱେତପଦ୍ମା ବ୍ୟସ୍ତ ହୋଇ ବସିଥିବା ସୋଫାରୁ ଉଠି ଆସିଲା ।

'ନା - ଶ୍ୱେତା, ମୋତେ କିଛି ପଚାର ନାହିଁ । ମୋ ଜୀବନର ଅନ୍ତ ହେଉ । ମୁଁ ଆଉ କିଛି ଚାହେଁ ନାହିଁ ।' ପ୍ରଭାତଙ୍କର କଥା କହିବାରେ କଷ୍ଟ ହେଉଥିଲା ।

'ଭିତରକୁ ଆସିପାରେ କି ?' ଡାକ୍ତର ନରେନ୍ଦ୍ରଙ୍କର ଧୈର୍ଯ୍ୟଚ୍ୟୁତି ଘଟିଲା । ଶ୍ୱେତପଦ୍ମା କବାଟ ଖୋଲିଦେଇ ଅବାକ୍ ହୋଇ ଚାହିଁ ରହିଲା ତାଙ୍କୁ ।

'ନମସ୍କାର, ମ୍ୟାଡମ୍ । ଆଜି ଆପଣ ଜଣେ ନରହନ୍ତାର ଅତିଥି ଚର୍ଚ୍ଚା କରୁଛନ୍ତି । ମୁଁ ଡାକ୍ତର ନରେନ୍ଦ୍ର ସାମନ୍ତ । ନିଜକୁ ଚିହ୍ନେଇ ଦେବାର ଲଜ୍ଜା ନାହିଁ ମୋର ।'

ଶ୍ୱେତପଦ୍ମା ତଥାପି ଅବୁଝା ଦୃଷ୍ଟିରେ ଚାହିଁ ରହିଲା ନରେନ୍ଦ୍ରଙ୍କୁ, ପରେ ପରେ ପ୍ରଭାତଙ୍କୁ ।

ପ୍ରଭାତ ଆଉ ନିରବ ରହିପାରିଲେ ନାହିଁ । କୋହଭରା କଣ୍ଠରେ କହିଲେ, 'ଶ୍ୱେତା ଡାର୍ଲିଂ, ଝିଅ ଆମର ବଂଚିଛି ।'

ଶ୍ୱେତପଦ୍ମାଙ୍କୁ ବକ୍ଷରେ ଜଡାଇ ଧରିଲେ ସେ ।

ଶ୍ୱେତପଦ୍ମାର ଆଖିରୁ ଅନେକ ବର୍ଷରୁ ଲୁହ ଶୁଖିଯାଇଥିଲା । ସେ ପ୍ରଭାତଙ୍କ ପାଖରୁ ନିଜକୁ ମୁକ୍ତିଦେଇ କହିଲା,

'ତା' ମୁଁ ଜାଣିଛି । ସେ ଯେବେ ଜନ୍ମ ହେଲା ସେଇଦିନରୁ । ସେ ମଂଜୁଳାର ଝିଅ ।

ନର୍ସିଂହୋମ୍‌ରୁ ଛଡାଇ ଆଣିଥିବା ମୋର ସେଇ ଶିଶୁଟିକୁ ନେଇ ମଂଜୁଳା ଶର୍ମା ମୋତେ ଦେଖା କରିଥିଲା ଗୋପନରେ । ସେ ଭାବିଥିଲା, ମୋ ଝିଅକୁ ଦେଖିଲେ ମୁଁ ଖୁସିରେ ଉଛୁଳି ଉଠିବି । କିନ୍ତୁ ତା' ମୁଁ ପାରିଲି ନାହିଁ । ଏ କଂସପୁରୀରେ ମୋ ଝିଅଟିର ଜୀବନ ଯେ ବିପଦସଂକୁଳ । ଝିଅକୁ ମୋର ତା' ହାତରେ ମୁଁ ସମର୍ପି ଦେଲି । ବିଶ୍ୱାସ କର, ସେ ମୋ ଝିଅ ନୁହଁ, ସେ ମଂଜୁଳାର ଝିଅ ।'

ପାଗଳୀଙ୍କ ପରି କାନ୍ଦି ପକାଇଲା ଶ୍ୱେତପଦ୍ମା । ଝଡ ଭଳି ଚାଲିଗଲା ପୂଜା, ପ୍ରାର୍ଥନା କୋଠରୀ ମଧ୍ୟକୁ । କବାଟ ଆଉଜେଇ ପାଷାଣ ମୂର୍ତ୍ତି ଭଳି ବସି ରହିଲା ସେ । ଉଭୟ ପ୍ରଭାତ ଓ ନରେନ୍ଦ୍ର ପରସ୍ପରକୁ କିଂକର୍ତ୍ତବ୍ୟ ଦୃଷ୍ଟିରେ ଚାହିଁ ରହିଲେ ।

ଶ୍ୱେତପଦ୍ମାଙ୍କ ଅନ୍ତର ଅଭିମାନରେ ଭାରାକ୍ରାନ୍ତ ।

'ଝିଅକୁ ପାଇ ମଧ୍ୟ ପାଇ ନାହିଁ । କୋଳରେ ଧରି ମୋ ବାଳୁତ ଶିଶୁକୁ କ୍ଷୀର ଦେଇ ନାହିଁ । ଡରି ଡରି ବଢ଼ାଇ ଦେଇଛି ଜଣେ ଅଜଣା, ଆଦୌ ପରିଚିତ ନ ଥିବା ସମାଜ ସେବିକାଙ୍କ ହାତରେ । ସେ ବଞ୍ଚିଯାଉ ।

ମଂଜୁକୁ ମୁଁ ଚିହ୍ନି ନ ଥିଲି । ଆଦୌ କେବେ ଦେଖି ନ ଥିଲି । ନର୍ସିଂହୋମ୍‌ରେ ଯାହା ଯାହା ଘଟିଥିଲା ସବୁ କଥା କହିଲା । ପଚାରିଲା, ଏଭଳି ଶାଶୂ, ସ୍ୱାମୀଙ୍କ ପାଖରେ ସମୟ କାଟିବ ? ତୁମ ନିଜ ଜୀବନକୁ ବି ଭୟ ଅଛି ।'

- ଆଉ କି ଭୟ ? ପୋଡି ଦେବେ ?

- ସେ ବୁଢ଼ୀ ସବୁ ପାରିବ । ମଂଜୁଳା ବିରକ୍ତିରେ କହିଲା ।

- ଜଗିବି, ନିଜକୁ ସୁରକ୍ଷିତ ରଖିବାର ଚେଷ୍ଟାରେ ରହିବି । ମୋ ଝିଅକୁ ବଞ୍ଚାଇ ରଖ୍ ମଂଜୁ । ତାକୁ ମଣିଷକରି ଗଢ଼ିବୁ । ମୁଁ ତୋ ସାଙ୍ଗରେ ଅଛି । ସେଇ ଦିନର ମଂଜୁ ମୋର ଘନିଷ୍ଠ ବାନ୍ଧବୀ ।

ଶାଶୂ ଜାଣିଲେ ବୋହୂର ଗହଣାବାକ୍ସ ଟ୍ରେନ୍‌ରେ ଚୋରି ହୋଇଗଲା । ମାଉସୀଙ୍କ ଝିଅ ବାହାରକୁଯାଇ ଫେରିବା ବେଳେ ରାସ୍ତାରେ କିଏ ନେଇଗଲା । ଘର ହୋଇଥିଲେ କାମକରିବା ଲୋକମାନଙ୍କ ଜୀବନ ଉଚ୍ଛନ୍ନ କରିଥାଆନ୍ତେ ସେ । ପୋଲିସ କୁକୁର ଲଗାଇ ହୁଲସ୍ଥୁଲ କରିଥାଆନ୍ତେ । ସେତେବେଳେ ସେ ମହାଶକ୍ତିମୟୀ । ପ୍ରଭାତଙ୍କ ଦୁର୍ବଳ ବ୍ୟକ୍ତିତ୍ୱ । ତେଣୁ ବାଧ୍ୟତଃ ଟ୍ରେନ୍‌ରେ ଫେରିବା ସମୟରେ ଚୋରି ହୋଇଗଲା କହିଲି ।

ମୋର ଗହଣା ସବୁ, ମୋଟା ଅଙ୍କର ଅର୍ଥ ମଂଜୁଳାକୁ ଦେଇ ଆସିଲି । କହିଲି, ଏସବୁ ମୋ ଝିଅର । ତା' ପାଇଁ ଭଲ କରି ଖର୍ଚ୍ଚ କରିବୁ ।

ଏଣେ ଶାଶୂ ବିକଳ ହେଲେ - ଷାଠିଏ ଭରି ଗହଣା ଚୋର ନେଲା ! ପ୍ରଭାତ ତୁ ଚୁପ୍ ହୋଇ ବସିଛୁ ?

ପ୍ରଭାତ କହିଲେ, 'କିଛି କରିହେବ ନାହିଁ । ଟ୍ରେନ୍‌ରେ ଗୋଟାଏ ରାତି ବସିଥିଲା ଶ୍ୱେତା । ତୁ ତ ତାକୁ ସବୁବେଳେ କହୁଛୁ, ଗହଣା କ'ଣ ବ୍ୟାଙ୍କ୍‌ର ଲକର୍‌ରେ ରହିବା ପାଇଁ ? ବାହାଘରମାନଙ୍କରେ ପିନ୍ଧୁନୁ କାହିଁକି ?'

ବୁଢ଼ୀ କହନ୍ତି, 'କେତେ ବନ୍ଧୁବାନ୍ଧବ ଆସୁଛନ୍ତି ଘରକୁ । ସବୁବେଳେ ବେକ ଖାଲି । ହାତରେ, କାନରେ ପତଳା ସୁନା ଟିକିଏ ପିନ୍ଧିଥାଏ ।'

- ମୋର କି ଦରକାର ଯେ ଉପରେ ପଡି କଥା କହିବି ? ମୁଁ ମା', ପୁଅଙ୍କ କଥାରେ ମୁହଁ ଖୋଲିଲି ନାହିଁ । ପ୍ରତି ମାସରେ କେବେ କେବେ ଦୁଇ ମାସରେ ନିଜ ପାଶ୍‌ବୁକ୍‌ରୁ ଟଙ୍କା କାଢ଼ି ଝିଅ ପାଇଁ ଦେଇ ଆସେ । ପ୍ରଭାତ ସଂକୀର୍ଣ୍ଣମନା ନୁହଁନ୍ତି । ଘରେ ଟଙ୍କା ପଇସା ବିଷୟ ନେଇ ସେ କିଛି ବୁଝନ୍ତି ନାହିଁ । ବରଂ ସବୁବେଳେ

ଅଭିଯୋଗ, 'ଘର ସାରା ସମସ୍ତଙ୍କୁ ସଜେଇଲ । ଯାଅ, ନିଜ ପାଇଁ କିଛି କିଣ । ନିଜ କଥା ଟିକେ ବୁଝ ।'

ମୁଁ ହସିଦିଏ । ସେ ଧରାଇଥିବା ଟଙ୍କା ସବୁ ମଂଜୁଳାକୁ ଦେଇ ଆସେ ।

ମୋ ଝିଅର କେତେ ପୋଷାକ ଦରକାର । ସେ ପଢ଼ିବ, ଗୀତ, ନାଚ ଶିଖିବ । ଖୁବ୍ ପଢ଼ିବ । ଏତେ ଟଙ୍କା ମଂଜୁ କୋଉଠୁ ଆଣି ଥାଆନ୍ତା ଯେ ?

ଛାତିରେ ପଥର ଲଦି ସବୁ ସହିଛି । ତା' ପାଇଁ ବଞ୍ଚିଛି । ତାକୁ ସୁଖୀ ଦେଖିଲେ, ମୋର ସବୁ ଆଶା ମେଣ୍ଟିଯିବ ।

ମୁଁ କାହାକୁ କଷ୍ଟ ଦେଇନାହିଁ । ପ୍ରଭାତଙ୍କୁ ଦୂରେଇ ଦେଇ ନାହିଁ ମୋ ଜୀବନରୁ । ତାଙ୍କ ପରିବାରର କାହାକୁ ହତାଦାର କରିନାହିଁ । କିନ୍ତୁ ସେମାନେ ମୋ ପାଇଁ କେତେବଡ ଅବିଚାର କରିଥିଲେ !

ଠାକୁରଘରୁ ଆସି କେତେବେଳେ ଶ୍ୱେତପଦ୍ମା ନିଜ ବିଛଣାରେ ଶୋଇ ରହିଛି । ଆଖି ଲୁହରେ ତକିଆ ଚଦର ଭିଜି ଯାଉଛି । ତଥାପି ନିଜକୁ ସାନ୍ତ୍ୱନା ଦେଇ ପାରୁ ନାହିଁ ସେ । ଲୋପାକୁ ନେଇ ପଛଦିନର ସୁନ୍ଦର ସମୟସବୁକୁ ସେ ମନଭରି ଉପଭୋଗ କରିପାରି ନାହିଁ । ହାତମୁଠାରୁ ଚୋରାବାଲି ଭଳି ସମୟ ଖସି ଚାଲିଯାଇଛି ।

'ଶ୍ୱେତା, ଶ୍ୱେତା, କ'ଣ ଭାବୁଚ ? ଟିକେ ବାହାରକୁ ଆସ । ତୁମ ସହ ଅତି ଜରୁରୀ କଥା ଅଛି । ଡାକ୍ତର ବି ଏ ପର୍ଯ୍ୟନ୍ତ ଖାଇ ନାହାନ୍ତି ?'

ଶ୍ୱେତପଦ୍ମା ସ୍ୱପ୍ନ ଭାଙ୍ଗିବା ଭଳି ବିଛଣାରେ ଉଠି ବସିଲା । ପ୍ରଭାତ କ'ଣ କହୁଛନ୍ତି ? ସେମାନେ କେହି ଖାଇ ନାହାଁନ୍ତି ଯେ ! ସେ ନିରବରେ ବାହାରକୁ ଉଠି ଆସିଲା । ନରେନ୍ଦ୍ର ସାମନ୍ତଙ୍କର କଥା କେତେପଦ ଶୁଣି ପାରିଲା ଶ୍ୱେତପଦ୍ମା ।

ଠିକ୍ ସେହି ସମୟରେ ଡାକ୍ତର ନରେନ୍ଦ୍ର ପାଖ ଗାଧୋଇବା ଘରୁ ମୁହଁ ହାତ ଧୋଇ ବାହାରି ଆସୁଥିଲେ । ନିଶ୍ଚିନ୍ତ ସ୍ୱରରେ ସେ କହିଲେ, 'ବନ୍ଧୁ, ଶ୍ୱେତାଙ୍କ ପାଇଁ ବ୍ୟସ୍ତ ହୁଅନ୍ତୁ ନାହିଁ । ସେ ଆମ୍ଭମାନଙ୍କୁ କ୍ଷମା କରିଦେବେ । ମାତ୍ର ଏବେ ଲୋପା,

ରୋଷନ୍‌ଙ୍କ ପାଇଁ ଆମର ବଡ କର୍ତ୍ତବ୍ୟ ଅପେକ୍ଷା କରିଛି । ମୁଁ ଭାବୁଛି ଏ କ୍ଷେତ୍ରରେ ବିଳମ୍ବ କରିବା ଉଚିତ ହେବ ନାହିଁ ।'

ଶ୍ୱେତପଦ୍ମାର ପାଦ ସ୍ଥିର ହୋଇଗଲା । ପୂଝାରୀ କହିଲା, 'ମା' ଆସନ୍ତୁ । ସମସ୍ତଙ୍କ ପାଇଁ ଟେବୁଲ୍‌ରେ ଖାଇବାକୁ ବାଢ଼ି ଦେଇଛି ।'

'ଶ୍ୱେତା, ସାରା ଜୀବନ ତୁମକୁ ଦୁଃଖ ହିଁ ଦେଇଛି । ଯାହା ଶାସ୍ତି ଦେବ ସହିବି । ଏବେ କିନ୍ତୁ ଅନେକ୍ କାମ । ସମସ୍ତଙ୍କୁ ମଂଜୁଳାଙ୍କ ଘରକୁ ଯିବାକୁ ହବ । ଆସ ତ ଖାଇସାରି ଶୀଘ୍ର ବାହାରିଯିବା ।'

ଶ୍ୱେତପଦ୍ମା ପ୍ରଭାତଙ୍କୁ ନୂଆ କରି ଚିହ୍ନିବା ଭଳି ଚାହିଁ ରହିଲା କିଛି ସମୟ । ଧୀରେ ହାତ ଧୋଇ ଖାଇବା ଟେବୁଲ ପାଖରେ ବସିଲା ।

'ମଂଜୁ, ଅବେଳାରେ ଶୋଇ ରହିଛୁ ?'

'ଥକି ଗଲିଣି, ଶ୍ୱେତା । ଆଉ ଦେହ ମନରେ ବଳ ନାହିଁ । ହଠାତ୍ ଏବେ ତୁ କୁଆଡେ ? ଲୋପା ଘରେ ନାହିଁ ।'

'ଆସିବ ତ ?'

'ନା, ଆଜି ଫେରିବ ନାହିଁ କହିଛି । ଆଉ କିଏ ଆସିଛନ୍ତି ? କାହାର କଥା ଶୁଣାଯାଉଛି ?'

'ବୈଠକ ଘରକୁ ଆ, ଦେଖିବୁ ।'

ପ୍ରଭାତ ନରେନ୍ଦ୍ରଙ୍କୁ ଦେଖାଇ କହିଲେ,

'ୟାଙ୍କୁ ଚିହ୍ନୁଛନ୍ତି ?'

'ହଁ ପ୍ରଭାତବାବୁ, ସେ ଏଯାଏ ମୋତେ ଚିହ୍ନିଛନ୍ତି କି ନା ଜାଣିନାହିଁ । ମାତ୍ର ଡକ୍ଟର ନରେନ୍ଦ୍ର ସାମନ୍ତଙ୍କୁ ଭୁଲିପାରିବି କିମିତି ?'

'ମୋତେ ଆପଣ କ୍ଷମା କରିଦିଅନ୍ତୁ, ମିସ୍ ଶର୍ମା ।' ଡାକ୍ତର ମଂଜୁଳାଙ୍କ ହାତଧରି ପକାଇଲେ ।

ମୁଁ ତ ସାରା ଜୀବନ ଏଭଳି କାର୍ଯ୍ୟକୁ ଜୀବନର ବ୍ରତ କରିଛି । ମାତ୍ର ସେ ?

'ଉଁ ହୁଁ, ମୋତେ ନୁହଁ । ସେଇ ଶ୍ୱେତପଦ୍ମାଙ୍କୁ କୁହନ୍ତୁ । ବିଚାରୀ ଭୁଲ ନକରି ବି କମ୍ କଷ୍ଟ ପାଇ ନାହିଁ ! ଆପଣଙ୍କ କୃତକର୍ମ ପାଇଁ ତା' ଠାରୁ ବରଂ କ୍ଷମା ମାଗନ୍ତୁ । ଶ୍ୱେତା, ତୋ କହିଥିବା ମୁତାବକ ଯେତିକି ପାରିଲି କର୍ତ୍ତବ୍ୟ କରିଛି । ଏବେ ତୋ ଝିଅକୁ ଫେରାଇ ଦେଉଛି ।'

ଅଧା କଥା କହି ଘର ଭିତରକୁ ଉଠିଗଲା ମଂଜୁଳା । ଅଳ୍ପ ସମୟ ପରେ ଫେରି ଆସି କହିଲା, 'ନେ ତୋର ଅମାନତ୍ । ଯାକୁ ମୁଁ ଖର୍ଚ୍ଚ କରି ନାହିଁ । ଏତେ ସୁନ୍ଦର ଗହଣା ସବୁ ବିକ୍ରି କରିବାକୁ ମନ ବଳିଲା ନାହିଁ । ଆବଶ୍ୟକତା ନ ଥିଲା । ଅବଶ୍ୟ ତୋ ଟଙ୍କାରୁ କିଛି ଖର୍ଚ୍ଚ କରିଛି । ବାକିତକ ଲୋପା ନାଁରେ ଜମା ରଖିଛି ବ୍ୟାଙ୍କ୍‌ରେ ।'

ଗହଣା ବାକ୍ସ ଦେଖି ପ୍ରଭାତ ଶ୍ୱେତପଦ୍ମାକୁ ଚାହିଁ ରହିଲେ ନିରବରେ ।

'ମିସ୍ ଶର୍ମା, ଅନେକ କଲେ, ଆଉ ଗୋଟିଏ କାର୍ଯ୍ୟରେ ଆମ ସଙ୍ଗେ ରହିବାକୁ ଅନୁରୋଧ କରୁଛି । ନୋଚେତ୍ ମୋର ପ୍ରାୟଶ୍ଚିତ ହେବ ନାହିଁ । ମୋ ଆତ୍ମା ଶାନ୍ତି ପାଇବ ନାହିଁ ।'

ହଠାତ୍ ଯେପରି ନିରବତାର ଛାଇ ଘେରି ଆସିଲା ମଂଜୁଳାର ସେଇ କୋଠରୀଟିରେ । ପ୍ରତ୍ୟେକେ ବାକ୍‌ଶକ୍ତି ହରାଇବା ଭଳି ନିଶ୍ଚୁପ୍ ହୋଇ ବସି ରହିଲେ ।

ଶ୍ୱେତପଦ୍ମା କହିଲା, 'ମଂଜୁ, ଶାଢ଼ିଟା ବଦଳେଇ ବାହାରିପଡ । ଆମେ ଡେରି କରିବା ଠିକ୍ ନୁହଁ । ଲୋପାର ପ୍ରସ୍ତାବ ନେଇ ଯିବାକୁ ହେବ ଯେ ରୋଷନ୍‌ର ଘରକୁ ।'

ସେମାନେ ସମସ୍ତେ ସେଇ ରାତିରେ ଗାଡିନେଇ ବିଷ୍ଣୁ ଆଚାର୍ଯ୍ୟଙ୍କ ଘରକୁ ବାହାରି ଯିବାକୁ ସ୍ଥିର କଲେ ।

ରାସ୍ତାରେ ସାମାନ୍ୟ ବିଶ୍ରାମ ନେଇ ପରଦିନ ସକାଳ ନଅଟା ସୁଦ୍ଧା ତାଙ୍କ ଘରେ ପହଞ୍ଚି ଯାଇପାରିବେ । ଏଇଭଳି ଯୋଜନା କରିଥିଲେ ସେମାନେ ।

ବ୍ରେକ୍‌ଫାଷ୍ଟ୍ ଟେବୁଲ୍‌ରେ ସେମାନେ ସମସ୍ତେ ବସିଥିଲେ । ଡକ୍ଟର ବିଷ୍ଣୁ ଆଚାର୍ଯ୍ୟ, ତାଙ୍କର ପତ୍ନୀ, ଝିଅ ଦୁଇଟି, ରୋଷନ୍ ଓ ଲୋପା । ଖାଇବା ଶେଷ

ହୋଇଥିଲା । ଟି'ପଟ୍‌ରୁ ଚା' ଢ଼ାଳି ତିଆରି କଲା ଲୋପା । ରୋଷନ୍ ବାପାଙ୍କ ହାତକୁ ଚା'କପ୍‌ଟା ଧରେଇ ଦେଇ କହିଲା,

'ବାପା, ମୁଁ ଆପଣଙ୍କ ପ୍ରସ୍ତାବରେ ରାଜି । ବୋଉ, ତୁ ଯେଉଁ ଝିଅକୁ ସ୍ଥିର କରିବୁ, ମୋର ଆଦୌ ଆପତ୍ତି ନାହିଁ ।'

ସେମାନେ ସମସ୍ତେ ପରସ୍ପରକୁ ଆଶ୍ଚର୍ଯ୍ୟରେ ଚାହିଁ ରହିଲେ । ବିଷ୍ଣୁ ଆଚାର୍ଯ୍ୟ କୌଣସି ଉତ୍ତର ନ ଦେଇ ଚା' ପିଇବାରେ ମନଦେଲେ । ରୋଷନ୍ କହିଲା, 'ଲୋପା ନିଜେ ମନା କରି ଦେଇଛି । ମୋର ଆପଣମାନଙ୍କ ପ୍ରତି, ଭାଇ ଭଉଣୀମାନଙ୍କ ପାଇଁ କର୍ତ୍ତବ୍ୟ ଅଛି । ମୁଁ ସ୍ୱାର୍ଥପର ହେବି ନାହିଁ ।'

'ବାଃ ପୁଅ, ତୁ ଜିତିଯିବୁ ଭାବିଛୁ ? ଆମକୁ ବି ଆମ କର୍ତ୍ତବ୍ୟ କରିବାକୁ ତୁ ବାଧା ଦେଇ ପାରିବୁ ନାହିଁ । ଗତ ରାତିରେ ଖୁବ୍ ଚିନ୍ତା କରିଛି । ତୋ ବୋଉ ସାଙ୍ଗରେ କଥାବାର୍ତ୍ତା କରିଛି । ଆମେ ଦିହେଁ ଭୁଲ୍ କରିବାକୁ ଯାଉଥିଲୁ । ସମାଜ, ପରିବାରର ସମ୍ମାନ, ବଂଶ ମର୍ଯ୍ୟାଦାର ଦ୍ୱାହି ଦେଇ ତୋର ସୁଖ ଲୁଟିବାରେ ଲାଗିଥିଲି ମୁଁ । ଧିକ୍, ମୋ ବୁଦ୍ଧି ! ରୋଷନ୍, ଲୋପାର ଅଧିକ ପରିଚୟର ଆବଶ୍ୟକତା ନାହିଁ । ତା'ର ପରିଚୟ ସେ ନିଜେ । ତା'ର ପ୍ରଜ୍ଞା, ତା'ର ବ୍ୟକ୍ତିତ୍ୱ ହିଁ ଏସବୁର ଉର୍ଦ୍ଧ୍ୱରେ । ଆଜି ମିସ୍ ଶର୍ମାଙ୍କୁ ଡକାଇବି । ତାଙ୍କ ସହ ପ୍ରଥମେ ପରିଚୟ, ଆଳାପ ହେବା ଏକାନ୍ତ ଆବଶ୍ୟକ । ଏସବୁ ପରେ ଯଥାଶୀଘ୍ର ଶୁଭବେଳାରେ ତୁମ ଦୁହିଁଙ୍କର ବିବାହ କାର୍ଯ୍ୟ ସଂପନ୍ନ କରାଇବାର ବ୍ୟବସ୍ଥା କରିବି ........'

ବିଷ୍ଣୁ ଆଚାର୍ଯ୍ୟ କଥା ସଂପୂର୍ଣ୍ଣ କହି ପାରିଲେ ନାହିଁ । ବାହାର ଫାଟକ ପାଖରେ ଗାଡି ରହିବାର ଶବ୍ଦ । ପରେ ପରେ କଲିଂବେଲ୍ ଦେଇ ଘର ଭିତରକୁ ପ୍ରବେଶକଲେ ଡାକ୍ତର ନରେନ୍ଦ୍ର ସାମନ୍ତ ।

ବିଷ୍ଣୁ ଆଚାର୍ଯ୍ୟ କିଛି କହିବା ପୂର୍ବରୁ ନରେନ୍ଦ୍ର ଭାରୀ କଣ୍ଠରେ କହିବାକୁ ଆରମ୍ଭ କଲେ,

'ସେମାନେ ସମସ୍ତେ ଆସିଛନ୍ତି, ବିଷ୍ଣୁ । ସମସ୍ତଙ୍କୁ ନେଇ ଆସିଛି । ଭାବୁଛି, ଏ ବାହାଘରରେ ତୋର ଆପତ୍ତି ରହିବ ନାହିଁ । ନିଜେ ଲୋପାମୁଦ୍ରାଙ୍କ ମା', ବାପା, ଝିଅର ବିବାହ ପ୍ରସ୍ତାବ ନେଇ ଆସିଛନ୍ତି ତୁମ ପାଖକୁ । ଏବେ ମୋର ମୁକ୍ତି ।'

କେତେବେଳେ ଡାକ୍ତର ନରେନ୍ଦ୍ର ସାମନ୍ତ ବାହାର କବାଟ ଦେଇ ଫାଟକ ଖୋଲି ରାସ୍ତାକୁ ଚାଲିଯାଇଥିଲେ ତା' କେହି ଜାଣିପାରିଲେ ନାହିଁ ।

'ମା' !!! ଲୋପା ଆଶ୍ଚର୍ଯ୍ୟରେ ଚାହିଁ ରହିଲା ମଂଜୁଳାକୁ ।

ମଂଜୁଳାର ଓଠରେ ହସ, ଅଥଚ ଦୃଷ୍ଟି ଉଦାସ । ଧୀରେ ଲୋପାକୁ ସେ କହିଲା,

'ମୁଁ ନୁହେଁ । ତୁ ସେମାନଙ୍କୁ ଖୋଜୁଥିଲୁ, ଲୋପା । ହେଇ ସେମାନେ, ତୋର ମା', ବାପା ଆସିଛନ୍ତି ।'

ଶ୍ୱେତପଦ୍ମା, ପ୍ରଭାତ ଉଭୟଙ୍କ ଚକ୍ଷୁ ଅଶ୍ରୁସଜଳ । ଲୋପା କିଛି ବୁଝି ନ ପାରି ସେ ଦୁହିଁଙ୍କୁ ଚାହିଁ ରହିଥିଲା ।

ଶ୍ୱେତପଦ୍ମା ପାଖକୁ ଯାଇ ଝିଅକୁ କୋଳେଇ ନେଇ କହିଲା, 'କାହିଁ କେତେଦିନ, କେତେ ଯୁଗ ହେବ ତୋତେ ଦେଖିନି, ଝିଅ ।'

'ଆ, ମା' ଥରେ ମୋ ପାଖକୁ । ଏତେ ଦିନ ପରେ ତୋତେ ଖୋଜି ପାଇଛି ।' ତଥାପି କାନ୍ଦୁଥିଲେ ପ୍ରଭାତ, ସମ୍ଭବତଃ ଆନନ୍ଦରେ । ଅଥଚ ଲୋପା ଶ୍ୱେତପଦ୍ମାର କୋଳରେ ଥାଇ ପ୍ରଭାତଙ୍କୁ ସେଇଭଳି ଅବୁଝା ଦୃଷ୍ଟିରେ ଚାହିଁ ରହିଥିଲା ।





## ଶକୁନ୍ତଳା ପଣ୍ଡା

ଗଳ୍ପ, ଉପନ୍ୟାସର ଲେଖିକା । ଏହା ବ୍ୟତୀତ ପ୍ରବନ୍ଧ, ଶିଶୁ ସାହିତ୍ୟ ମଧ୍ୟ ରଚନା କରିଛନ୍ତି । ଆକାଶବାଣୀ, ଦୂରଦର୍ଶନରେ ତାଙ୍କର ନାଟକ ଇତ୍ୟାଦି ପ୍ରଚାରିତ, ପ୍ରସାରିତ ହୋଇଛି ।

ତାଙ୍କର ପ୍ରକାଶିତ ଗଳ୍ପ ପୁସ୍ତକ 'ସୂର୍ଯ୍ୟଶିଖା', 'ଅଂଧକାରର ରଂଗ', 'ଅନେକ ଦିନ ପରେ', 'ନିଶୀଥ ସୂର୍ଯ୍ୟ', 'ଜେରୁଜେଲମ୍‌ର ସନ୍ଥ', 'ମନିକାର ଘର', 'ପକ୍ଷୀ ଉଡିଯା', ଉପନ୍ୟାସ 'ସୀମାହୀନ', 'ତମସା' ଓ 'ମଞ୍ଜୁଳାର ଝିଅ' ଏବଂ ଭ୍ରମଣକାହାଣୀ 'ଦୁଇଟି ଯାତ୍ରା : ଆଣ୍ଡାମାନ୍ ଓ ସିକିମ୍' ପ୍ରକାଶିତ ।

କେତେକ ଗଳ୍ପ ହିନ୍ଦୀ, ଇଂରାଜୀର ବିଭିନ୍ନ ପତ୍ରପତ୍ରିକାରେ ଅନୁଦିତ ହୋଇ ପ୍ରକାଶ ପାଇଛି ।

ଉତ୍କଳ ବିଶ୍ୱବିଦ୍ୟାଳୟରୁ ସ୍ନାତକ ଶିକ୍ଷା ପ୍ରାପ୍ତ । ତାଙ୍କ ସଂପାଦନାରେ ୧୯୭୫ ମସିହାରୁ ମାସିକ ପତ୍ରିକା 'ସୁଚରିତା' ନିୟମିତ ପ୍ରକାଶ ପାଇଆସୁଛି ।

